



ପ୍ରାଚୀ ଗ୍ରନ୍ଥମାଳା — ଊନବିଂଶ

# ଚଉତିଶା-ମଧୁକର




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ପ୍ରଥମ ଖଣ୍ଡ )

---

ପ୍ରାଚୀ ସମିତି ପକ୍ଷରୁ

**ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି: ଏ: ଙ୍କ**

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

---

ପ୍ରକାଶକ

**ପ୍ରାଚୀ ସମିତି, କଟକ**

ମୂଲ୍ୟ ଆଠଅଣା




ଉଚ୍ଛ୍ୱସିତ ହୃଦୟଭାବକୁ ବର୍ଣ୍ଣମାଳାର ଚଉତ୍ରିଶ ଅକ୍ଷର କ୍ରମରେ କବିତାରେ ପ୍ରକାଶ କରିବା କଳା-ପ୍ରାଣ କୁଶଳହସ୍ତ ଉତ୍କଳୀୟ ପ୍ରାଚୀନ କବିଗଣଙ୍କର ଗୋଟିଏ ବିଶିଷ୍ଟ ଚତୁରୀ । ଅଧୁନା ଯେଉଁମାନେ ବିଦେଶୀୟ ଭାବରେ ଅନୁପ୍ରାଣିତ ସେମାନେ କହିବେ ନିରଙ୍କୁଶ ଭାବ ଗୋଡ଼ରେ ଏ କଠୋର ନିଗଡ଼ କାହିଁକି ? କିନ୍ତୁ କଳା ନିପୁଣଙ୍କୁ ଅଙ୍ଗଭୂଷଣ ରୂପେ ବରଣ କରିନିଏ, ଯାହାକୁ ନିଗଡ ବୁଝା ଯାଉଛି ତାହା କଳାର ଅମୃତ ଅଳଙ୍କାର ବିଶେଷ । ଏହା ପୃଥିବୀରେ ଯଦି କୌଣସି ଜାତି ସମ୍ୟକ୍ ବୁଝିଥାଏ ତେବେ ସେ ଉତ୍କଳୀୟ ।

ଇଉରୋପୀୟ ସାହିତ୍ୟରେ ସନେଟ୍ ବା ଚତୁର୍ଦ୍ଦଶ ପଦୀ କବିତା ଶତ ଶତ ବର୍ଷ ହେଲା ଭାବ ପ୍ରକାଶର ଗୋଟିଏ ବିଶିଷ୍ଟ ସରଣୀ ବୋଲି ବିବେଚିତ ହୋଇ ଆସୁଅଛି । ତାହାର ଜନପ୍ରିୟତା ଅଦ୍ୟଯାଏଁ କ୍ଷୁଣ୍ଣ ହୋଇନାହିଁ, ବରଂ ପୃଥିବୀର ଅନ୍ୟାନ୍ୟ ଅଂଶରେ—ଭାରତରେ ମଧ୍ୟ—ଚତୁର୍ଦ୍ଦଶ ପଦୀ କବିତାକୁ କବିମାନେ ନିଜର କରି ନେଇ ଅଛନ୍ତି । ଉତ୍କଳର ଆଧୁନିକ ଯୁଗର କବିମାନେ ମଧ୍ୟ ସନେଟ୍, ଅଥବା ବଙ୍ଗଳା ଅନୁକରଣରେ ସଙ୍ଗୀତହୀନଛନ୍ଦବିଶିଷ୍ଟ କବିତା ଲେଖିବାକୁ ଶ୍ଳାଘାର ବିଷୟ ମନେ କରୁଅଛନ୍ତି । କିନ୍ତୁ ହା ରେ ଦେଶଜାତ ଚଉତିଶା ! ସେମାନଙ୍କର ନାହିଁକି ଲକ୍ଷନ

କେବଳ ଚୋର ପାଇଁ ସୃଷ୍ଟ ଥାଏ ! କହିବା ବାହୁଲ୍ୟ ବିଦେଶାଗତ ପଦାର୍ଥ ପ୍ରତି ଅନାପୃତ୍ତିତ ମମତା ଓ ସ୍ୱଦେଶଜାତ ପଦାର୍ଥ ପ୍ରତି କାରଣ-ହୀନ ଘୃଣା ଜାତୀୟ ଅଧଃପତନର ଅଭ୍ରାନ୍ତ ଶକୁନ ।

କିନ୍ତୁ ଉତ୍କଳୀୟ-ମନ ଉପରେ ଯୁଗଯୁଗାନ୍ତ ଧରି, ଚଉତିଶା ଯେଉଁ ପ୍ରଭାବ ବିସ୍ତାର କରିଅଛି ତାହା ମୁଷ୍ଟିମେୟ କେତେଜଣ 'ଶିକ୍ଷିତ'ଙ୍କ ନାସାକୁଞ୍ଚନରେ ଉଡ଼ି ଯିବାର ଜିନିଷ ନୁହେଁ । ଆଜି ଚତୁର୍ଦ୍ଦିଗରେ ଜାତୀୟଭାବ ଯେପରି ବିଚ୍ଛୁରିତ ହୋଇ ପଡ଼ିଅଛି, ଜାତୀୟ ଭାବ ଯେପରି ଅଶାନ୍ତ ବିଳାସ କରୁଅଛି ଉତ୍କଳର ସୁପ୍ତ ପୁର ପଲ୍ଲୀକୁ ଜଗାଇବାକୁ ଉତ୍କଳର କବିମାନେ ଯଦି ବିଦେଶୀ-ବ୍ୟାମୋହ ତ୍ୟାଗ କରି ଭାବ ପ୍ରକାଶର ପୂର୍ବ ପୁରୁଷାନୁସୃତ ଜାତୀୟ ମୌଳିକ ସରଣୀ ଚଉତିଶା ଓ ଚଉପଦୀ ଆଦିକୁ ଧରନ୍ତେ ତେବେ ନବୀନ—ଭାବ—ସମ୍ପଦ ବିଶିଷ୍ଟ ଦଳଙ୍କ ମଧ୍ୟରେ ଆବଦ୍ଧ ନ ରହି ସମଗ୍ର ଦେଶର ଦୈନ୍ୟ ଦୂର କରନ୍ତା । ଉତ୍କଳ ତାର ଆତ୍ମାର ଉଦ୍‌ବୋଧନ ନିମନ୍ତେ ତାର ଜାତୀୟ କବିଙ୍କୁ ଅପେକ୍ଷା କରୁଅଛି । କିନ୍ତୁ ସେ କାହାନ୍ତି ?

ଉତ୍କଳୀୟଗଣ ଅତୀତରେ ଚଉତିଶା ନାମରେ ଯେଉଁ ସବୁ କଣ୍ଠହାର ଗୀତ ରଚନା କରି ପ୍ରାଣ ତୃପ୍ତ କରିଥିଲେ ସେମାନଙ୍କର ସଂଖ୍ୟା ଯେ କେତେ ତାହା କହିହେବ ନାହିଁ । ଆମ୍ଭେମାନେ ପ୍ରାୟ ଦୁଇଶତ ଯାଏଁ ଚଉତିଶା ଏ ପର୍ଯ୍ୟନ୍ତ ଆବିଷ୍କାର କରିବାକୁ ସକ୍ଷମ ହୋଇଅଛୁଁ । ସମୟକ୍ରମେ ନୂଆ ନୂଆ ପୋଥି ଅଦିଲେ ନୂଆ ନୂଆ ଚଉତିଶାର ସନ୍ଧାନ ମିଳୁଅଛି । ପ୍ରାପ୍ତ ସମସ୍ତ ଚଉତିଶାକୁ ଏକାଠି କରି ଆମ୍ଭେମାନେ ଉତ୍କଳର

ବର୍ତ୍ତମାନ ଓ ଅନାଗତ ବଂଶଧରମାନଙ୍କ ଉପଦେଶ ନିମିତ୍ତ ସେ ଗୁଡ଼ିକୁ 'ଚଉତିଶା ମଧୁଚକ୍ର' ନାମକ ପୁସ୍ତକରୂପେ ରଖି ଦେଉଅଛୁଁ । ଉପଦେଶ ସାମଗ୍ରୀ ଛଡ଼ା ଉତ୍କଳସାହିତ୍ୟର ଇତିହାସଗଠନ ନିମନ୍ତେ ଚଉତିଶା ସବୁ ଅମୂଲ୍ୟ ଉପାଦାନ ଯୋଗାଇବେ ଏପରି ସବୁ ଚଉତିଶା ମିଳୁଅଛି ଯାହା ନିକଟରେ ଓଡ଼ିଆର ପୁରାତନ କାବ୍ୟମାନ ଦୁଗ୍ଧପୋଷ୍ୟ ଶିଶୁବତ୍ ଅର୍ବାଚୀନ । ଚଉତିଶା ସମ୍ପର୍କରେ ଇତିହାସମୂଳକ ବିଶେଷ ଆଲୋଚନା ସମସ୍ତ ଚଉତିଶା ପ୍ରକାଶ ପାଇଗଲେ କରାଯିବ । ଆଜି ଚଉତିଶା ମଧୁଚକ୍ରର ଦଶଟୋକାର ବିଶିଷ୍ଟ ଏହି ପ୍ରଥମ ଖଣ୍ଡ ଦେଶବାସୀଙ୍କ ହସ୍ତରେ ସମର୍ପଣ କରି ତନ୍ନିହିତ ଅନବଦ୍ୟ ମାଧୁରୀ ଉପଭୋଗ କରିବାକୁ ଆମ୍ଭେମାନେ ସେମାନଙ୍କୁ ସାଦରେ ଆହ୍ୱାନ କରୁଅଛୁଁ ।

ପ୍ରାଚୀ କର୍ମଭବନ
ଗଣେଶ ଘାଟ
କଟକ
ତା ୧ । ୫ । ୩୧

ଶ୍ରୀ ବିବୁଧ ଚରଣ ପଟ୍ଟନାୟକ

# ଚଉତିଶା ମଧୁଚକ୍ର

# ସୂଚୀପତ୍ର





# ଚଉତିଶା ମଧୁଚକ୍ର

## ରାଧାଦର୍ଶନ ଚଉତିଶା

---

ପ୍ରଧାନତଃ ଦୀନକୃଷ୍ଣ ବିରହୀଗୋପୀଭାବର କବି । ଉପଭୋଗର ପର୍ଯ୍ୟବସାନ ମଧ୍ୟ ବିରହରେ । କବୀନ୍ଦ୍ରଙ୍କ ଏହି କେତୋଟି ଚଉତିଶାରୁ ସ୍ପଷ୍ଟ ଜଣାଯାଏ ଦୀନକୃଷ୍ଣ ମଧୁର ପ୍ରୀତିରସର ମଧ୍ୟ ପକ୍ଷପାତୀ ଥିଲେ । ମିଳନ ଓ ବିରହ ଉଭୟ ଅବସ୍ଥାର ବର୍ଣ୍ଣନାରେ ଦୀନକୃଷ୍ଣଙ୍କ ଭାବାବେଶ ସମାନ । ତେଣୁ ତାଙ୍କର ଚଉତିଶାମାନଙ୍କରେ ଗୋପୀ-ସଙ୍ଗ-ଲାଳସୀ ଶ୍ରୀକୃଷ୍ଣଙ୍କ ଆବେଗମୟ ଅନୁରାଗ ଓ କୃଷ୍ଣ-ବିରହିଣୀ ଗୋପିକା ଓ ଗୋପିକା-ବିରହୀ ଶ୍ରୀକୃଷ୍ଣଙ୍କ ବିରହର ହୃଦ୍‌ବେଗମୟ ଉଚ୍ଛ୍ୱାସ ସମାନ ଦକ୍ଷତା ସହ ଚିତ୍ରିତ । କବିତା ଜଗତକୁ ଦେଖିଲେ ରାଧାଦର୍ଶନଚଉତିଶା ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ଅତି ଉଜ୍ଜ୍ୱଳ ରତ୍ନ ।

କୃଷ୍ଣ କହନ୍ତି ଦୂତୀକି କର ଗମନ କଉତୁକି
କହ ମୋତେ ଗଲୁ କାହା ନନ୍ଦିନୀ ସେ ରୂପ ନିନ୍ଦୁଛି ରତିକି
ଅରେ ସଖି । ୧ ।

ଖେଳାଇ ଖଞ୍ଜନ ଆଖି ଖରେ ଲୋଡ଼ୁଥାଇ ରଖି
ଖୀଣଉଦରୀ ମୋ ମନ-ନୟନକୁ କଲା ଅତି ମହାସୁଖୀ
ଅରେ ସଖି । ୨ ।

ଗତ ଗଜରାଜ ଜାଣି        ଗୁଣ୍ଠୁଛି ସେ ଘୁଣମଣି
ଗଙ୍ଗାଧରବପୁ-ମହାନଦୀ କି ସେ ଅଷ୍ଟାଲ ହେମତରଣୀ
ଅରେ ସଖି । ୩ ।

ଘାଗୁଡ଼ି ବଳା ନୂପୁର        ଘନ ଘନ ନାଦ ତାର
ଘୂଞ୍ଚାଇ ଦେଉଛି ମହାନନ୍ଦ କଳ ମରାଳ ଡ଼ାକ ଡମ୍ବର
ଅରେ ସଖି । ୪ ।

ନୋହିଲା ପିଶ୍ଚଢ଼ ଅକ୍ଷି        ନାଗସ୍ୱାମଣିକ ଦେଖି
ନୀଳକଣ୍ଠଙ୍କୁ କେ କେତେ ସେବା କରି ପାଇଛି ସେ ଚନ୍ଦ୍ରମୁଖୀ
ଅରେ ସଖି । ୫ ।

ଚୃଭୁ ଚମ୍ପକବରଣୀ        ଚତୁରୀ ଚିତ୍ତମୋହିନୀ
ଚନ୍ଦ୍ରାର୍ଦ୍ଧଭାଲେ ଗନ୍ଧ ଉର୍ଦ୍ଧ୍ୱତିଲକ କି କରିଅଛି ସେ ଧେନ
ଅରେ ସଖି । ୬ ।

ଛାଡ଼ିବେ ଯୋଗୀ ସମାଧି        ଛଣେ ତା ଦେଖିବେ ଯଦି
ଛଟବଟ ହୋଇ ରତିପତି ଶରେ କର୍ମରେ ହେବେ ବିବାଦୀ
ଅରେ ସଖି । ୭ ।

ଜମ୍ବୂନଦ କଳେବର        ଜଳି ଉଠୁଅଛି ତାର
ଯାହା ବୋଲି ବୋଲି ସଜନି ତାହାକୁ ଜଗନ୍ନାଥହିଁ ସେ ବର
ଅରେ ସଖି । ୮ ।

ଝଟକେ ତାଙ୍କ ଗଣ୍ଡେ        ଝିମଣ୍ଡକେ ଦୁଖ ଖଣ୍ଡେ
ଝଟତ ଦେଖିଲେ ଫୁଲଶର ଶର ଦଅଇ ଫୁଲ କୋଦଣ୍ଡେ
ଅରେ ସଖି । ୯ ।

ନାହିଁ ତାହା ସମାନରେ ନବ ପଞ୍ଚଭୁବନରେ
ନଷ୍ଟେ ଜାଣିଲି ସେ କାମଜୟରଥ ଜନମିଛି କପଟରେ
ଅରେ ସଖି । ୧୦ ।

ଟେକ କୁଚ-କୁମ୍ଭ ଦୁଇ ଟାଣଭରେ ଟେକି ହୋଇ
ଟକାଏ ଦୃଷ୍ଟି-ସୂର୍ଯ୍ୟଙ୍କୁ ଚକ୍ରବାଡ଼ ପ୍ରାୟେ ନ ଦେଖାଇ ମହୀ
ଅରେ ସଖି । ୧୧ ।

ଠାବ କଲି ଏତେ କାଳେ ଠିକ ଲଗ୍ନଯୋଗବଳେ
ଠଣ ପଦ୍ମକୋଳେ ଖଞ୍ଜନ ଯୁଗଳ ଖେଳବା ଦେଖିଲି ଡୋଳେ
ଅରେ ସଖି । ୧୨ ।

ଡାଳିମ୍ବବୀଜ-ଦଶନୀ ଡମ୍ବରୁ-ମଧ୍ୟା-ଶୋଭନୀ
ଡମ୍ବର କରି ଡାଳିମ୍ବନେତେ ପିକ ମଣ୍ଡି ଯାଉଛନ୍ତି ମେଦିନୀ
ଅରେ ସଖି । ୧୩ ।

ଢମ କହୁନାହିଁ ତୋତେ ଢଳ ଅନାଇଲା ମୋତେ
ଢାଳ ଶୃଙ୍ଗାଣୀ ଭାବ ଦେଇ ମନକୁ ନେଲା ସଙ୍ଗତେ ସଙ୍ଗତେ
ଅରେ ସଖି । ୧୪ ।

ଆହା ସେ ରଙ୍ଗ ଅଧର ଅନଙ୍ଗ ଅମୃତ ଘର
ଅରୁଣ କୋଳେ ଚନ୍ଦ୍ରକଳା ରହିଲା ପ୍ରାୟେ ହସରେ ସୁନ୍ଦର
ଅରେ ସଖି । ୧୫ ।

ତରୁଣୀ-ମଣି ସେ ରାମା ତନଲୋକ-ସୁଖ-ସୀମା
ତାହାକୁ ସେହି ଉପମା ଯାହା ଯେନ କାମର ମହା ଗାରମା
ଅରେ ସଖି । ୧୬ ।

ଥରକୁ ଥର ବଳିବା ଥିରେ ତା କେତେ କଳିବା
ଥଳପଦ୍ମ ତୋଳ ବିଞ୍ଚିଲା ପରାୟେ ଦଶଇ ପାଦ ଗ୍ଲଳବା
ଅରେ ସଖି । ୧୭ ।

ଦଣ୍ଡୁଥିଲା ବନ୍ଧୁ ଦୂରେ ଦେଖୁ ଦେଖୁ ହେଲା ପୁରେ
ଦେହ ଅଦେହ ଦେହ କରିଗଲା ସେ ଅନାଇବା ମାତ୍ରକରେ
ଅରେ ସଖି । ୧୮ ।

ଧନ୍ୟ ସେ ଭ୍ରୂଭଙ୍ଗିମା ଧନ୍ୟ ନେତ୍ର ସୁରଙ୍ଗିମା
ଧନୁଶର ଧରି ମଦନ ଚଳିଲା ପରାୟେ ସେ ତରଙ୍ଗିମା
ଅରେ ସଖି । ୧୯ ।

ନୟନେ ମୋର ରହିଲା ନିର୍ମଳ ମୁଖ ସେ ଦେଲା
ନାନା ସୁବିଦ୍ୟା ଅଙ୍ଗରେ ଥିବାପ୍ରାୟେ ଲେଶେ ତ ଭାଷା ନୋହିଲା
ଅରେ ସଖି । ୨୦ ।

ପରମାନନ୍ଦ ସମ୍ପତ୍ତି ପାଇଲା ପରାଏ ମତି
ପରମେଶ୍ୱରଙ୍କ ମହିମାରୁ ଆଜ ପାହିଲା କି ଯୋଗେ ରାତି
ଅରେ ସଖି । ୨୧ ।

ଫୁଲ୍ଲ-ତିଳ-ଫୁଲ ନାସା ଫୁଲାଇ କହିବା ଭାଷା
ଫେଡ଼ି କି କହିବ ଶୁଣିଲାରୁ ମୋର ଦେଲା ସୁରଗୁରୁ ଦଶା
ଅରେ ସଖି । ୨୨ ।

ବଡ ଲୋକ ତାକୁ କଲି ବିକ ହେଲା ପ୍ରାୟେ ହେଲି
ବିଷମଶର ଏତେକେ ବନ୍ଧ ଯେନ ଅଇଲା ଏଠାକୁ ବୋଲି
ଅରେ ସଖି । ୨୩ ।

ଭାଗ୍ୟେ ଥିଲା ମୋର ଯେତେ    ଭଲେ ଅନାଇଲ ମୋତେ
ଭବରପୁହୃଦ୍ୟ ଭାବିବାକୁ ତାହା ଭରସା କରନ୍ତୁ ତୋତେ
ଅରେ ସଖି । ୧୪ ।

ମହାଯୋଗେ ଯୋଗୀ ଥିବ    ମୁହୂର୍ତ୍ତେ ତାଙ୍କୁ ଦେଖିବ
ମହତ କରି କହୁଛନ୍ତି ମହାଦେବ ସତ୍ୟ ମୁଖୁଁ ନ ବର୍ତ୍ତିବ
ଅରେ ସଖି । ୧୫ ।

ଯୁବତୀ ଜନଙ୍କ ସଙ୍ଗେ    ଯାଉଥିଲ୍ଲ କଥାରଙ୍ଗେ
ଜାତି ପଦ୍ମିନୀ ଅଙ୍ଗ ସଉରଭକୁ ବେଢ଼ିଥିଲେ ପାଶେ ଭୃଙ୍ଗେ
ଅରେ ସଖି । ୧୬ ।

ରମଣୀ-ମଣି ସୁଶ୍ରୋଣୀ    ରଚନ୍ତି ରୁଚିର ବେଣୀ
ରଣାରଣଙ୍କ ରଣ-ରଥଶିରେ କି ନୀଳପତାକା ମଣ୍ଡି
ଅରେ ସଖି । ୧୭ ।

ଲିଖିଛନ୍ତି କସ୍ତୁରୀ ରେଖ    ଲଲାଟର ଦୁଇପାଖ
ଲଳିତ ଅଳକାବଳି କି ଯେମନ ସେ ମୁଖ ଦେଉଛନ୍ତି କି ସୁଖ
ଅରେ ସଖି । ୧୮ ।

ବିଧାତା ବଡ଼ ହୁଡ଼ିଲା    ବିବେକ ପଣ ଛାଡ଼ିଲା
ବସୁଦେବ ପୁଅ ବାସୁଦେବକୁ ତ ବେଳୁ ଏହା ନ ଯୋଡ଼ିଲା
ଅରେ ସଖି । ୧୯ ।

ସର୍ବ ଅଙ୍ଗେ ଶୋଭା ଶିରୀ    ସମ ହୋଇଅଛି ପୂରି
ସର୍ବାଙ୍ଗ ଅଳଙ୍କାରକୁ ସୁନ୍ଦରତା କରିଅଛି ସେ ସୁନ୍ଦରୀ
ଅରେ ସଖି । ୩୦ ।

ସତେହେ ଏମନ୍ତ ହେବ          ଶୁଭଯୋଗ ଯେବେ ଥିବ
ଶଶୀ-ଶେଖର ଦୟା କଲେ ଅବା ସେ ଶଶୀମୁଖୀ ଦେଖାଦେବ
ଅରେ ପକ୍ଷି । ୩୧ ।

ଶୁଣି ହସି କହେ ଦୂତୀ          ସେ ବୃଷଭାନୁ-ଦୁହିତା
ସେହି ତ ତୁମ୍ଭଙ୍କୁ ଦେଖିବା ନିମନ୍ତେ ମନ କରିଥାଇ ନିତ
ଅହେ କାହ୍ନୁ । ୩୨ ।

ହର ଗଉରୀ ପୂଜଇ          ହୃଦେ ତୁମ୍ଭଙ୍କୁ ଭଜଇ
ହଂସଗମନୀ ତୁମ୍ଭ କଥା ଶୁଣିଲେ ସମସ୍ତ କଥା ତେଜଇ
ଅହେ କାହ୍ନୁ । ୩୩ ।

କ୍ଷେମେ ବିଜେ କର ଧୀରେ          କ୍ଷୋଭ ନ ଧର ମନରେ
କ୍ଷେମେ ଦୀନକୃଷ୍ଣ ବୋଲେ ଭେଟ ଦେବ ଛାୟାପତି-ସୁତାତୀରେ
ଅହେ କାହ୍ନୁ । ୩୪ ।



# ଅମୃତନିଧି ଚଉତିଶା

ରାଧାଦର୍ଶନ ଚଉତିଶା ପରି ଅମୃତନିଧି ଚଉତିଶା ମଧ୍ୟ ଦୀନକୃଷ୍ଣଙ୍କ ମଧୁର ପ୍ରୀତି-ରସର କବିତା । ପ୍ରେମିକ ଚୂଡ଼ାମଣି ରସରାଜଶେଖର ଶ୍ରୀକୃଷ୍ଣଙ୍କ ପ୍ରେମାମୃତମୟ ହୃଦୟ ଶ୍ରୀରାଧାଙ୍କ ବିମୋହନ ଅଙ୍ଗଲାବଣ୍ୟର କବିକଳ୍ପୋଚିତ ଅପାର ତୁଳନାରେ ବ୍ୟଥା ପାଇ ଏହି ଚଉତିଶାର ପ୍ରତି ଛନ୍ଦରେ ବିଗଳିତ ହୋଇ ବହିଗଲାପରି ବୋଧ ହୁଏ । ଧନ୍ୟ ଦୀନକୃଷ୍ଣ! ଧନ୍ୟ ତୁମର ଭକ୍ତିମୟୀ କବିତା-କଳା! ଭଗବାନ୍ କୃପା ବଶତଃ ତୁମର କଣ୍ଠନିଃସୃତ ହୃଦୟ ବିମଳ ଭକ୍ତି-ରସରେ ଭରପୂର ହୋଇ ନ ଥିଲେ କବିତାର ଏ ସୁଧାଧାରା ଆଜି ଉତ୍କଳର ମନପ୍ରାଣ ଆପ୍ଲୁତ କରିବାର ସୁଯୋଗ ପାଇ ନ ଥାନ୍ତା ।

କାଳିନ୍ଦୀକୂଳେ ରାଧାଙ୍କୁ ଦେଖି
କୃଷ୍ଣ ବୋଲନ୍ତି ରେ ପ୍ରିୟସଖି !
କେ ବୋଲଇ ତୋତେ ପ୍ରଫୁଲ୍ଲ କମଳ
କନକ ଦର୍ପଣ ଚନ୍ଦ୍ରମୁଖୀ ରେ
ପ୍ରାଣସଖି !
କି ତାହାର ଅଜନ୍ମରୁ ନାହିଁ ଆଖି ରେ ।
କି ତୋ ଭ୍ରୂଭଙ୍ଗୀ ଚାହାଣୀ ନାହିଁ ଦେଖି ରେ ।
କଣ୍ଠେ ଏହା ଶୁଣି ହୋଉଥାଇ ଦୁଖୀ ରେ ।୧।

ଖଳ ଲୋକଙ୍କର ଖଳ ବୋଲ
ଖଣେ ହେ ପସାରେ ନୋହେ ଭଲ
ଖଞ୍ଜନ୍ତି ପଣ୍ୟ ତୋହୋର ପ୍ରାୟେ କାଚ
କାଞ୍ଚନ ସଙ୍ଗତେ କରି ଭୁଲ ରେ
ଜୀବଧନ !
ଖୋଜି କହିବି କେତେ ମୁଁ ସେ ବଚନ ରେ

ଖେଦ ଲଭୁଥାଇ ଏହି ଯେନ ମନ ରେ
ଖୀଣୋଦନ୍ତ ! ତୋ ମୁଖକୁ କେ ସମାନ ରେ । ୨ ।

ଗୁରୁଯଜୁବନ ! ଏବେ ଶୁଣ
ଶୁଣିଲେ ତାହାଙ୍କ ଅବଗୁଣ
ଗଗନ-ନକ୍ଷତ୍ର ପ୍ରାପ୍ୟେ ନ ସମ୍ଭବ
ଅଧିକ କହିବା କି କାରଣ ରେ
ଗୁଣନିଧି !
ଶୁଣି କହିବ ତାହାଙ୍କ ଗତିବିଧି ରେ
ଗଳି ଜଳକୁ ଯେ ପଦ୍ମ ତପ ସାଧି ରେ
ଗାଢ଼େ ଶିଶିର ତାହାକୁ ଦେଲା ବାଧି ରେ । ୩ ।

ଘର୍ମକର-କର-ତାପ ସହି,
ଘୋର ତପସ୍ୟା ବଳରୁ ସହି
ଘଟେଣି-ଅନନୀ ଶ୍ରୀଅଙ୍ଗ-ସୁବାସ
ଦେଲା କଣ୍ଠ ଏବେ ଅଣ୍ଠ ବହି ରେ
ଘନସ୍ତନ !
ଘଟେ ବିକାଶ ହୁଅଇ ଏହି ଯେନ ରେ
ଘୂର୍ଣ୍ଣଯାଇ ଶୋଭା କାହିଁ ନଶିଥିଲା ରେ
ଘଡ଼ି ତ ନ ରହଇ ତା ଯେନାଯେନ ରେ । ୪ ।

ନକ୍ଷତ୍ରରେ ଆଗ କଷି ହୋଇ.
ନିଅଁ ରେ ଝାସେ ସୁବର୍ଣ୍ଣ ଯାଇଁ
ନରହାଥେ ପଡ଼ି ଦର୍ପଣ ହୋଇ ତ
ମନକୁ ତର୍ପଣ କଲା ନାହିଁ ରେ

ନତମିନ !

ନଷ୍ଟେ ନାଶ ଯାଉ ହେଲେ ଅଭିମାନୀ ରେ
ନିସ୍ତେଜିଲା ତୋହୋ ମୁଖ ଛପି ଘେନ ରେ
ନୋହୁ କଉଁ କାଳରେ ତୁ ସୁଖଦାୟୀ ରେ । ୫ ।

ଚତୁରୀମଣି! ତୁ ଶୁଣ ଏବେ
ଚକ୍ରଧର ବେଶ ଧରି ପୂର୍ବେ
ଚ୍ୟୁତ ହେଲା ପୁଣ୍ୟଶ୍ଳୋକ ବାସୁଦେବ
ପଶୁଏ ହୋଇଲା ଚନ୍ଦ୍ର ଏବେ ରେ

ଚଞ୍ଚଲାକ୍ଷି !

ଚାରୁବଦନକୁ ହେବ ବୋଲି ଲଜ୍ଜା ରେ
ଚକ୍ଷୁଆଗେ ହରିଣକୁ ବହିଅଛୁ ରେ
ଚତୁରମୋହିବା ଚାତୁରୀ ନାହିଁ କଷ୍ଟ ରେ । ୬ ।

ଛନ୍ଦକ ଚାହାଣୀ ଭାବ ତୋର
ଛଇଳ ମୋହନ ସୁଖଘର
ଛାର କରଇ ଯେ ମଦନ ଶରକୁ
ଆଉ କଥା ଅବା କେତେ ଦୂର ରେ

କ୍ଷୀଣୋଦରି !

ଛଳ କହି ବସିଲେ ତୋ ନେତ୍ରଶିଖା ରେ
ଛୁଟିଯିବ ଯିନା ଚନ୍ଦ୍ର କଥା ତୋଷା ରେ
କ୍ଷୀରେ ଘୃତ ପଶୁପ୍ରେ ଯେ ଅଛୁ ପୂରି ରେ । ୭ ।

ଯାହା ଚନ୍ଦ୍ର ପକ୍ଷେ କ୍ଷୀଣ ହୋଏ,
ଜାଣିଲେ ସେହିଟ ଦଣ୍ଡ ପାଏ

ଯାମିନୀ ଜ୍ୟୋଛ ଦିବସରେ ନ ଥାଇ
ଇଥି ଭେଦେ ଖନ୍ଦୁ ଘାତ ପାଏ ରେ
ଜାଣୁମଣି !
ଜଳନିଧିସୁତ ପଣେ ବହୁ ଅଣି ରେ
ଯାଇଁ ମହାଦେବ ଶିରେ ହୋଏ ମଣି ରେ
ଯୋଗ୍ୟ ନୋହିଲେ ନେମାକୁ ମୁଖଠାଣି ରେ ।୮।

ଝସକେତୁସଖା ଭାବେ ଥାଇ,
ଝିମନ୍ତେ ଉପ୍ରୋଧ କରେ ନାହିଁ
ଝାଡ଼ ଅନଳ ଚନ୍ଦନକୁ ଦହନ୍ତି
ପ୍ରାୟେ ପଦ୍ମିନୀଙ୍କ ନ ତେଜଇ ରେ
ଝଲଗୋର !
ଝୁରୁଥାଇ ତୋ ମୁଖକୁ ନୋହି ସର ରେ
ଝାସଇନ୍ତି ପ୍ରତିଦିନେ ସିନ୍ଧୁବାର ରେ
ଝଗଡ଼ୁଛନ୍ତି ତା ମନକୁ ଅନୁସର ରେ ।୯।

ନିରନ୍ତରେ ଏକା ଭ୍ରମୁଥାଇ,
ନ ରହଇ କାହିଁ ସ୍ଥିର ହୋଇ
ନିଶ୍ଚେ ଜାଣିଲି ଯେ ଜନମୁଁ କୁଟିଳ
ନିନ୍ଦାରୁ ତାହାର ଭୟ ନାହିଁ ରେ
ନତଅଙ୍ଗି !
ନତବ୍ରତଧନଙ୍କୁ ତୋର ମୋର ସଙ୍ଗୀ ରେ
ନାନା ଭାବେ ତୁ ମୋତେ କରୁଛୁ ରଙ୍ଗୀ ରେ
ନୁଛି ଯାଇ କି ନା ତୋର ଭୂରୁଭଙ୍ଗୀ ରେ ।୧୦।

ଟେକ ଭୁ ଗୃହିଁଲେ ଭ୍ରୂଲତା
ଟଳିଯିବେ ମହା ଊର୍ଦ୍ଧ୍ୱରେତା
ଟେକେ କନ୍ଦର୍ପ ଦର୍ପକୁ ଅବଲମ୍ବ
କରବ କେ ଏଡ଼େ ବବେକତା ରେ
ଟେକସ୍ତନା !
ଟାଣ କବମାନେ ହୋଇ ଦୁଷ୍ଟମନା ରେ
ଟେକଥାନ୍ତି କାମଦେବଧନୂ ସିନା ରେ
ଟାହ୍ମ ପ୍ରାପ୍ୟେ ତାଙ୍କ ବୋଲ ନୁହଇ ନା ରେ । ୧୧ ।

ଠାବ କଲ ଏତେ କାଳେ ଅସି
ଠିକେ ଯେ ଜଳରେ ଯାଏ ଭସି
ଠୂଳ ଭପ୍ୟେ ସବୁ ଅବଲମ୍ବ କଲ
ତ୍ରାପ୍ୟେ କବ ହେଲେ ସବୁଭାଷୀ ରେ
ଠାକୁରାଣି !
ଠାବ କର ତୋ ଅଙ୍ଗକୁ ପୁଣ ପୁଣି ରେ
ଠେସି ପକାଇଲ ଏବେ ତାଙ୍କ ବାଣୀ ରେ
ଠିଅ ହେବାକୁ ତାଙ୍କର ନାହିଁ ଅଣି ରେ । ୧୨ ।

ଡକାଇତ ପ୍ରାପ୍ୟେ କବଗୀତ
ଡ଼ାକିଲେ ଦେଖୁ ଦେଖୁ ନ ଚହନ୍ତି
ଡ଼ାକୁଥାନ୍ତି ମୋର ଡ଼ୋଳାପ୍ରତମାକୁ
ଖଞ୍ଜନ-ହରଣ-ମୀନ-ନେତ୍ରୀ ରେ
ଡ଼ୋଳେଶ୍ୱର !
ଡ଼େର ହୋଏ ଶ୍ରେମ ଏହା ଶୁଣି କର ରେ

ତଦେ ଅଙ୍ଗକୁ ସେ ବୋଲ ଯେତେ କର ରେ
ଡ଼ଙ୍କ ଲାଗିଲେ ନୋହିବ ଏତେ ସର ରେ ।୧୩

ତମ କଣ କହୁ ନାହିଁ ସଖି !
ତାକ ଅନାଇଲେ ଯହୁଁ ଆଖି
ତୋଳକୁ ଅମୃତ ଆସ୍ୱାଦକୁ ପ୍ରାପ୍ୟେ
ମନକୁ କରଇ ମହାସୁଖୀ ରେ
ତାଳନେଳି !
ତାଲେ ତୋହୋ ଯେନ ସିନା କାମ ଛଵୀରେ
ତମପଟେ ଧରଥାଇ ଫୁଲପଢୀ ରେ
ତାଳବାକୁ ଦମ୍ଭକୁ ସେ ମହାମନ୍ତ୍ରୀରେ ।୧୪।

ଏକଥା ନୋହଇ ଅପ୍ରମାଣ.
ଆନନ୍ଦ-ଦାୟିନୀ! ଏବେ ଶୁଣ
ଅଉଯାର ତୋର ନୋହିଥିଲାକୁ ଟି
ମହାଦେବଠାରେ ଗଲା ପ୍ରାଣ ରେ
ଅଲକ୍ଷନା !
ଏବେ ତୁ ତାହାର ମୃତ୍ୟୁସଞ୍ଜୀବନୀ ରେ
ଏହି ନୟନଦ୍ୱାରେଟି ତାହା ଚାହିଁରେ
ଆଜ୍ଞ ଅଛୁ ନକ ତୋର ପରୀ ଦାନୀରେ । ୧୫ ।

ତୋ ନେତ୍ରତରଙ୍ଗ ହାବ ଭାବ
ଭୁଛ ଜୀବ ଛର କାହିଁ ହେବ ?
ତେରଛେ ଗୃହିଁବା କ କହିବା ଯହିଁ
ବ୍ରହ୍ମାପାଏ କାମ ପରାଭବ ରେ

ନିବଳନ !

ତୋହୋ ନୟନର ଯଉଁ ଘେନାଘେନ ରେ
ତାହା କହିବ କଉଁ ଯୋଗ୍ୟତା ଘେନ ରେ
ତେଡ଼େ ଭାଗ୍ୟ ମୋର କାହିଁ ଅଛୁ ଧନା! ରେ ।୧୬।

ସ୍ୱର୍ଗମଧେ ଦମ୍ଭ ହତ ବାନା
ସ୍ୱବ ତ ନାହିଁ ଏ ନେତ୍ରବନା
ଥମ୍ଭନ ମୋହନ ବଶ ଉଚ୍ଚାଟନ
ନାଶ କରିବାକୁ ଏହି ସିନା ରେ

ସ୍ୱରଗତ !

ଥରେ ଥରେ କରଇ ଏ ଯଉଁ ଗଣ୍ଡ ରେ
ଥାଣୁ ଦେଖି କାମେ ହେବ ଛଣ୍ଡବଣ୍ଡ ରେ
ଥାଉ ଆଉ ଲୋକର ବା କେତେ ଥାଣ୍ଡ ରେ ।୧୭।

ଦେଖିଲେ ଯେ ହୋଏ ସୁଖକର
ଦେଇ ସିନା ତାକୁ ପଟାନ୍ତର
ଦୂରେ ଥାଇ କବି ବଚନ କହୁଛୁ
ତୋ ନେତ୍ର ନଷ୍ଟେ ବୈକୁଣ୍ଠପୁର ରେ

ଦବ୍ୟଗୋଚର !

ଦଇବେହେଁ ତ ବନ୍ଧୁର ମନୋହାରୀ ରେ
ଦସ୍ତାନଧଦସ୍ତା ଥିଲେ ଦେଖିପାରି ରେ
ଦୁଖ ଅଛୁ ବୋଲି ମନେ ନ ବିଚାର ରେ । ୧୮ ।

ଧଳା କଳା ରଙ୍ଗେ ଶୋଭା ପାଏ
ଧାତା ହର ହର ସଙ୍ଗ ପ୍ରାୟେ

ଧନ୍ୟ ଧନ୍ୟ ତାର ଜନମର ଭାଗ୍ୟ
ଯାହାର ଏ ଦରଶନ ହୋଏ ରେ
ଧୃତଧ୍ୱଂସି !
ଧରଣୀରେ ତୋର ନେତ୍ର ପରଶଂସି ରେ
ଧୀର ହୋଇ ଏହା ଶୃଙ୍ଖୁ ଥିବା ବସି ରେ
ଧର୍ମ- ଅର୍ଥ- କାମ- ମୋକ୍ଷ- ଫଳଦୃଶୀରେ । ୧୯ ।

ନରତେ ବଢ଼ାଇ ପ୍ରେମପ୍ରୀତି
ନ ଛଡ଼ଇ ଅନୁରାଗ ଖ୍ୟାତି
ନଷ୍ଟେଁ ଜାଣିଲ ରେ ନଯ୍ୟନ-ପ୍ରତିମା
ତୋ ନେତ୍ର ନାଗରୀ ରସବତୀ ରେ
ନବଯୁବା !
ନାନା ଗତରୁ ଏ ନୃତ୍ୟକାରୀ ଅବା ରେ
ନୀଳକଣ୍ଠଠାରେ କର ପୂର୍ତ୍ତି ସେବା ରେ
ନରଲୋକରେ ଏହ ଶୋଭା ଦେଖୁଥିବା ରେ । ୨୦ ।

ପଡ଼ିଲେ ଏ ନେତ୍ରେ ନେତ୍ରଗତେ
ପ୍ରତେ ହୋଉଥାଉ ମନେ ଏଁତେ
ପାକଶାସନ- ସଖିତ୍ୱଙ୍କ ପ୍ରଶଂସା
କରୁଥାନ୍ତି ଲୋକେ କ ନମନ୍ତେ ରେ
ପ୍ରାଣମଣି !
ପରମାନନ୍ଦ ସୁଖକୁ ଦେବା ଅଣିରେ
ପ୍ରତିକ୍ଷଣେ ଦହଇ ଏ ନେତ୍ରଠାଣିରେ
ପ୍ରତି ଅଙ୍ଗ ପୁଲକାଇ ପୁଣ ପୁଣିରେ । ୨୧ ।

ଫୁରୁଛୁ ମନରେ ଆସି ଯେତେ
ଫେଡ଼ି ତା ଅବା କହିବ କେତେ
ଫାଇ ଲମ୍ଫ ପାଇ ତରଙ୍ଗ ଭାବରୁ
କ୍ଷୀରସିନ୍ଧୁ ପ୍ରାପ୍ତେ ହୋଏ ପ୍ରତେ ରେ
ଫୁଟେମୁଖି !
ଫୁଲ୍ଲ ଅରବିନ୍ଦେ ଫୁଲଲଠ ଦେଖି ରେ
ଫୁରୁଣାରେ ଲକ୍ଷି କବି ହୋଏ ସୁଖୀ ରେ
ଫଳ ଏ ବାହାରେ ଆଉ ନାହିଁ ସଖି ରେ । ୨୨ ।

ବିବେକ ଛାଡ଼ଇ ଯଉଁ ଜନ
ବଡ ହେଲେ ତାକୁ ବୋଲି ସାନ
ବିଶ୍ୱର ବିଶ୍ୱର ବୋଲନ୍ତି ତୋ ନେତ୍ର
ଖଞ୍ଜନ ଚକୋର ମୃଗ ମୀନ ରେ
ବରାଙ୍ଗନା !
ବୁଲୁ ହାଣି ହୋଏ ଏହା ଶୁଣି ସିନା ରେ
ବ୍ରହ୍ମା ଯାହା ଦେଖି ହେବ ହତମନା ରେ
ବଚନରେ ତାହା କର ଏତେ ଅନା ରେ । ୨୩ ।

ଭାବ ନ ଜାଣଇ ଯଉଁ ଲୋକ
ଭଲ ମନ୍ଦ ତାର ହୋଏ ଏକ
ଭେଖୀ ଭ୍ରମର ଠାରୁ ଜଣାଗଲା ସେ
ଅଧିକ କହିବା କଉଁ ଠେକ ରେ
ଭାବନିଧି !
ଭାବୁ ଥାଇ ଏହିକଥା ନିରବଧି ରେ

ଭ୍ରମ ହେଲା କାହିଁପାଇଁ ଯାଉଥିବି ରେ
ଭଲ କଥାରେ ଅଭଲ କଲୁ ସିଦ୍ଧି ରେ । ୨୪ ।

ମଦାଳସୀ ମୁଖ ନେତ୍ର ଛବି
ମୋହୋ ବୁଦ୍ଧି କେତେ ମୁଁ କହିବି ?
ମହାଯୋଗୀ ମହା ଦମ୍ଭ ଧରାଧର
ମର୍ଦ୍ଦିବାକୁ ଯେହ୍ନେ ମହାପବ ରେ
ମନହାସି !
ମନେ ଏମନ୍ତ ସପ୍ରତେ ହୋଏ ଅସିରେ
ମହାବନରେ ଯମୁନା ବହେ ମିଶିରେ
ମହାସୁଖ ଉପରେ ଏ ସୁଖରାଶିରେ । ୨୫ ।

ଯେମନ୍ତ ମୋ ସଙ୍ଗେ ସ୍ୱାମ ଥିଲେ
ଜଗତ ଅନନ୍ଦ ହୋଏ ଭଲେ
ଜଗମୋହନ ! ମୋ ନେତ୍ରକୁ ତୋ ନେତ୍ର
ସେହିରୂପେ ଅଜ ସୁଖ ଦେଲେ ରେ
ଜୀବଧନ
ଯାହା ହୋଉଛୁ ଏବେହେଁ ମୋହୋ ମନ ରେ
ଯେବେ ସର୍ବଦା ହେବ ତୋ ଦରଶନ ରେ
ଯଦୁବଂଶେ ସମ୍ଭବା ମୋର ଧନ୍ୟ ରେ ।୨୬।

ରମଣୀମଣି ତୋ ସ୍ମିତବାଣୀ
ରଙ୍ଗିମା ଅଧର ଦନ୍ତଶ୍ରେଣି
ରୁଚ ରୁଚିର ଉଚିତ ପ୍ରଶଂସା
ଲୁହାଇ ନ ଦେଲା ନେତ୍ର ଅଣି ରେ

ରସିକଜନ !
ଭାଗବନ୍ତ କୃଷ୍ଣ ଗୁଣ ଭାବ ଯେନ ରେ
ରତ୍ତ ପକ୍ଷପାତେ ସେନା ହୋଇ ମାନାରେ
ଭାବ ଦିବସ ଏ ମୋର ସୁଖଦାଆ ରେ । ୧୭ ।

ଲଳିତ ଲୋଳ ମହିମା ଯେତେ
ଲକ୍ଷିବାକୁ ଦିଶୁ ନାହିଁ ମୋତେ
ଲୋଭ କର ମୃଗତୃଷ୍ଣା ତତତନ୍ତୁ
ବୋଲିବା କଥା ହିଁ ଅବା କେତେ ରେ
ଲୀଳାବତି !
ଲାଗିଥାଉ ମୋତେ ଏ ନୟନ-ପ୍ରୀତିରେ
ଲୋକନାଥ କରଥାଉ ଏହି ମତି ରେ
ଲାଭ ଏ ବାଦାରେ ଆଉ ନାହିଁ ଛୁଟି ରେ । ୧୮

ବାସୁଦେବ-ସ୍ନେହବାଣୀ ଶୁଣି
ବୋଲେ ବ୍ରଜବଧୂ-ଶିରୋମଣି
ବେଭାରେ ରସିକ ନାଗର ରସନ୍ତୁ
ଗୁଣବନ୍ତ ନାଶ ଭାବ ଆଣି ହେ
ବନମାଳୀ !
ବଡ଼କର ଯେତେ ସ୍ତ୍ରିଶ ଫୁଲ ପାଳ ହେ
ବତେ ତେତେ ରୂପେ ସୁଖ ଭୋଗ କେଳ ହେ
ବଳ କହିବ ଅବା ତା କେତେ ଭାଳ ହେ । ୧୯।

ସୁମନା ସୁମନ ସୁମନସ
ସବୁ ରୂପେ ଯେବେ କର ତୋଷ

ସୁଖ ସମ୍ପତ୍ତି ବହୁତ କର ଭୋଗ
କରନ୍ତୁ ବିବେକ ସୁପୁରୁଷ ହେ
ଶ୍ୟାମଘନ !
ସବୁଦିନେ ଥିବ ଏହି ଅବଧାନ ହେ
ସପନେହେଁ ମନେ ନ କରିବ ଆନ ହେ
ସବୁକର ମାଗୁଛି ମୁଁ ଏହି ଦାନ ହେ । ୩୦

ସରସ - ସନ୍ଦର୍ଭ - ଗର୍ଭ - ଭାବେ
ସନ୍ତୋଷେ ମେଳଣି ହୋଅ ଏବେ
ଶ୍ରୀହରି ବୋଲନ୍ତି ସେବକ ଦେବା ତ
ଉଚିତ ନୋହିଲ ପ୍ରଭୁଠାବେ ରେ
ସୀମନ୍ତିନି !
ସଙ୍ଗ-ରଙ୍ଗ ବଙ୍କ ହୋଇ ନାହିଁ ହାନି ରେ
ସତ ନ ବଳେ, ନ ଚଳେ ପାଦ ବେନି ରେ
ସୁଧା ବରଷି ବଚନ ସୁଖ ଘେନି ରେ ।୩୧

ଶ୍ୟାମ ଶ୍ୟାମା ଏକଠାବେ ଦେଖି
ସଖୀ ଡାକନ୍ତି ରେ ପ୍ରାଣସଖି
ଶ୍ୟାମ-ମେଘରେ ତ ଅପୂର୍ବ ଥକିତ
ବିଜୁଳି ପରାୟେ ଅଛୁ ଲାଖି ରେ
ସହଚରି !
ଶ୍ୟାମଅଭୟ-ପଞ୍ଜର ଆଶ୍ରେ କର ରେ
ସବୁ ଭୟକୁ ଦେଲୁ କି ଦୂର କର ରେ
ଶୀଘ୍ରେ ଆସ ମୁଁ ଗଲିଚି ପରିହରି ରେ । ୩୨ ।

ହରି ବୋଲନ୍ତି ରେ ଗୋପାଙ୍ଗନା !
ହେଲୁ ତୁ ପବନ ପ୍ରାପ୍ତେ ସିନା
ହତ କଲୁ ଘନ ରସ ବରଷିବା
କଉଁ କାରଣରୁ ବଙ୍କମନା ରେ
ହାସ୍ୟବଳ !
ହାଥୁ ନେଲୁ ମୋ ଅମୃତରସାବଳ ରେ
ହୃଦେ ଏହି କଥା ନନ୍ଦ ଥିଲୁ କଳ ରେ
ହର-ବଇରି ଶରେ ତୁ ହୋଅ ଦଳରେ । ୩୩ ।

କ୍ଷଇଲ ଗୋପୀ ହରଷେ ଗଲେ
କ୍ଷେମେ ଗୋପ ପରବେଶ ହେଲେ
କ୍ଷଣଦା କାଳେ ଛଇନେ ଭୁରିହଲେ
କନ୍ଦର୍ପ-ଦର୍ପକୁ ବିନାଶିଲେ ସେ
କ୍ଷମାନିଧି
କ୍ଷନ୍ଦ ଗୋପୀ ଅଙ୍ଗେ ଅଭରଣ-ବିଧି ସେ
କ୍ଷିତମଣ୍ଡନୀ ମୋହିନୀ ମନ ବୋଧି ସେ
କ୍ଷେମେ ଦୀନକୃଷ୍ଣ ମନକାମ ସିଦ୍ଧି ସେ । ୩୪ ।



# ଅନୁରାଗ ରତ୍ନାକର ଚଉତିଶା

ଅନୁରାଗ ରତ୍ନାକର ଚଉତିଶାରେ ରସିକରାଜ କୃଷ୍ଣଚନ୍ଦ୍ରଙ୍କ ଅନୁରାଗର ଯେଉଁ ଉତ୍ତୋଳ କଲ୍ଲୋଳ ଉଠିଅଛି ତାହାର ପଟାନ୍ତର ଓଡ଼ିଆ ସାହିତ୍ୟରେ ଅଛି କି ନାହିଁ ସନ୍ଦେହ । ଏ ଚଉତିଶା କ୍ଷୁଦ୍ର କବିତା ହେଲେହେଁ ଖଣ୍ଡ-କାବ୍ୟବତ୍ ଉତ୍କଳର ଜନ ମନ ହରଣ କରି ଉତ୍କଳ-ଭାରତୀଙ୍କ ଭଣ୍ଡାରରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିବ ।

### ରାଗ କାଳି

କାଳିନ୍ଦୀକୂଳେ    କଦମ୍ବମୂଳେ    କୃଷ୍ଣ ରାଧାଙ୍କୁ ଦେଖି
କୃପା ସରାଗେ    କହନ୍ତି ଆଗେ    ହେ ଚନ୍ଦ୍ରକାନ୍ତି-ମୁଖି !
କି ବୋଲି ତତେ    ବୋଲିବି ମତେ    ଏ କଥା କହୁ କିନା
କାଳିକ ଏହି    ସଂଶୟ ବହି    ହେଲି ଚଞ୍ଚଳମନା । ୧ ।

ଖୋଜି ଯେବେହେଁ    ବୋଲିବି ସ୍ନେହେ    ତୁ ମୋର ଫୁଲଗଭି
ଖଞ୍ଜନ-ଜାତି—    ନେତ୍ରି ! ହେବେ ତ    ଥୋକାଏ କାଳି ଶୋଭି ।
ଖରେ ଖପାଇ    ପକାଇ ଦେଇ    ଅଣଆଦର କରି
ଖୀଣ-ଉଦରି !    କନକ-ଗୋରି !    ଏହି କଥାକୁ ଡରି । ୨ ।

ଗଳାର ହାର    ବୋଇଲେ ହାର    ପଦେ ରହିଲା କଥା
ଗୁଣ-ଗଉରି !    ହୃଦୟହାରି !    ହୃଦେ ହୁଅଇ ବଥା
ଗୁଣି ଗୁଣି ବା    ବୋଲିବି ମୋର    ଗନ୍ଧତିଳକ ତୁହି
ଗଲା ସେ ଭାବ    ତିଳକେ ଯହିଁ    ଝିଲିକେ ଅଛି ନାହିଁ । ୩

ଘେନାଘେନରେ ବୋଲିବ ଘନ— ସାର ଚନ୍ଦନ ମୋର
ଘଡ଼କେ ଶୁଖି ଝଡ଼ପଡ଼ ସେ ଅଙ୍ଗରୁ ହୋଏ ଦୂର ।
ଘୂର୍ଣ୍ଣାକ୍ଷରକେ ଅନ୍ତର ନୋହେ ମହାସୁଖକୁ ଦେବ
ଘନଜଘନା ! ଘଟସ୍ତନା ! କହ ମୋତେ ଏ ଭାବ ।୪

ନେତ୍ରପ୍ରଭମା ବୋଲି ବୋଇଲେ ସହଜେ ନେତ୍ର-ସାର
ନିର୍ମଳ କର ସକଳ ଦେଖି ସବୁର ମନୋହର ।
ନୋହଇ ଅବ— ରଖ ବଖାନେ ନିଜ ଦର୍ଶନ ସୁଖ
ନବକିଶୋରି ! କନକଗୋରି ! ଏହି ତ ବଡ଼ ଦୁଖ ।୫।

ଚତୁରୀମଣି ! ପଦ୍ମିଣମଣି ବୋଲିବା ଅଭ୍ୟାସଇ
ଚତ୍ୱରେ ଅସି ଫଣସ୍ପୃ ବସି ପୁଣି ତା ବିନାଶଇ
ଚନ୍ଦ୍ର ପଦର ବନ ବିହାର ହେବାର ଚୂର ଯୁଗ
ଚଣ୍ଡାଳ ବିହି କରୁ ଯେ ନାହିଁ କ୍ଷଣେ ହେବା ବିଯୋଗ ।୬

ଛଡ଼ ତୋ ସଙ୍ଗ ଯେବେ ଏ ଅଙ୍ଗ ରହଇ ହୋଇ ଭଗ୍ନ
ଛନ୍ଦେ କେମନ୍ତେ ବୋଲିବ ପ୍ରିୟେ ମୁଁ ମୀନ ତୁ ଜୀବନ ?
ଛୁଦ୍ର ଦରଶୀ— ମାନେ ଯେ ହସି ଉଡ଼ାଇ ଦେବେ ଅଗ
ଛୁରୀ-ଘାତରୁ ଅଧିକ ହୋଇ ବାଧେ ତାହାଙ୍କ ବାଗ ।୭।

ଯେବେ ଉତ୍ତମୀ ତତ୍ର ତରଣୀ- ଠାରେ ନୂହନ୍ତା ହେଲା
ଜଗ-ମୋହନ ! ତେବେ ବୋଲନ୍ତି ମଦନ-ନଦୀ-ଭେଲା ।
ଯତନ କର ଯେବେ ବୋଲିବ ଦିବ୍ୟ ହଂସୁଳୀ ଭୁଲି
ଯୁବତୀ-ରତ୍ନ ! ସେ କୋମଳରୁ ତୋହୋ ଶ୍ରୀଅଙ୍ଗ ବଳ ।୮

ଝଷକେତନ କେଳିରଚନ— ଭଣ୍ଡାର ଅବା କେତେ
ଝଳ-ଗଉର ! ବିଚାରିକରି ତୁ ଦେଉ ଯେତେ ଯେତେ
ଝୀନବସନା ବଚନଘେନା ମହାପୃଥୁଳସ୍ତନା
ଝାସି ଅନେକ— ବାର ସାଗରେ ତୋତେ ପାଇଛି ସିନା । ୯ ।

ଞଥନ ଧନ ବୋଲିଲେ ମନ ଘେନଇ ଆନ ବାଟେ
ଞେଇ ବକବା ଦେହ ରଖିବା ବିଗ୍ରହରେ ସ୍ନେହ ତୁଟେ
ଞୋହିଲେ ଅବା ବୋଲିବ କାମ— ଧ୍ୱଜ ଜୟ ପତାକା
ଞବଡ଼ ଉଡ଼େ ପଛକୁ ପଡ଼େ ହୁଅଇ ଏହି ଦକା । ୧୦ ।

ଟଙ୍କଧରଙ୍କ— ବଇଷ୍ଣ-ଟୋପ- ନଶ୍ରେଣୀ ଲକ୍ଷ ଦେଲେ
ଟାଣ ଦାରୁରେ ନିର୍ମାଣ ସେହି ଯେତେ ଯତନ ହେଲେ
ଟେକେ ତୋ ଟେକ ଟେକିଲେ କଣ୍ଠା ଟିକାଏ ହେବ ଶେଷ
ଟାହି ନୋହଇ ନିତମ୍ବବତି ! ମହେଶଙ୍କୁ ଅଶେଷ । ୧୧ ।

ଠଣଠଧମା ! ସୁନ୍ଦରସୀମା ! ତୋହୋ ପଟାଏ ଭୂହି
ଠାଠିକ କରି କହି ବସିଲେ ତୋତେ ସମାନ କାହିଁ ?
ଠାବ ନ କଲି ମନ ମୋହୋର ତିନି ଭୁବନ ଖୋଜି
ଠିକେ ତା କେତେ କହିବି ପୀନ— କୃଷ୍ଣ ମାନସେ ହେଜି । ୧୨ ।

ଡାକ ବୋଲିବ ତୁ ମୋ ମାନସ- ମାନସ ରାଜହଂସୀ
ଡ଼େଲାଇ ତାହା ସେହି ଅବନୀ— ସରେ ବିହରେ ଆସି !
ଡାଳିମ୍-ବୀଜଜିତ— ଦଶନା ! ତେବେ ଅନ୍ତର ହେଲି
ଡମ୍ବରୁମଧ୍ୟା ! ବୋଇଲି କଥା ବ୍ୟର୍ଥ ହୋଇଗଲି । ୧୩ ।

ଢମ କହିବା ମନ ମୋହିବା ଏ ଅବା କଉଁ ଭଲ
ଢାଳେ ହେ ପ୍ରେମ ଲୋଭେ ଛଦ୍ମ ବୋଲ ତରଙ୍ଗ ଭୁଲ ।

ତାଙ୍କୁଣି ଫେଇ    ଫଣୀ ଖେଳାଇ    ଗୀତ ଗାଇଲା ପ୍ରାୟେ
ତଗତମାଳ    କପଟ କେଳ    ପଛେ ଦହଇ କାୟେ ।୧୪।

ଆରତ ବୋଲ    ଅନଙ୍ଗ ଗେଲ    ଥୟେ ନୋହଇ ସଖି!
ଅଧଇର୍ଯ୍ୟରେ    ଅନୁରାଗରେ    ସମସ୍ତ ହୋଏ ଲେଖି
ଏବେ ବୋଇଲି    ମୁଁ ମତ୍ତଫୁଲ—    ଲଟ ତୁ ଫୁଙ୍କି ଫୁଲ
ଅରବିନ୍ଦରୁ    କୁଟଜ ଯାଏ    ଅଧର ଚୁମ୍ବି ଗେଲ ।୧୫।

ତପନ ପଦ୍ମ—    ପ୍ରୀତି ଛଦ୍ମ    ପ୍ରାୟେ ଲାଗିଲା ମୋତେ
ତୋୟରୁ ଆଡ଼    ହେଲେ ଦହନ    କରଇ କର ଘାତେ
ତାହାର ନାହା-    ଠାରେ ହେ ଯାହା    ତାହା କହିବ କେତେ
ତୁଙ୍ଗା ବୃକ୍ଷରେ    ସ୍ୱଚ୍ଛ ଦବାରେ    ମଧୁପ ଯେହ୍ନ ମାତେ ।୧୬

ଥୟ ନୋହଇ    ଚନ୍ଦ୍ରମା କଇ-    ରବର ଯେନାଯେନ
ଥାଇ ଏ ଜଳେ    ଯେ ଖ-ମଣ୍ଡଳେ    ବହରେ ତାରା ଯେହ୍ନ
ଥାପନ୍ତି କବି-    ମାନେ ଏଥିକି    ଏ ପ୍ରୀତି ଏତେ କଷ
ଥଳ ନ ପାଇ    ଜଳେ କି ଜଳ—    ଫେନ ଧଇଲେ ତର ? ୧୭

ଦେହ ପୁଲକ    କେତେ ପୁଲକ    ଅନ୍ତର କଷ ମଣି
ଦେଇ କି ଲକ୍ଷ    ଥିଲେ ଦାଲକ୍ଷ    ଅନ୍ତର କଥା ଆଣି
ଦର୍ଶନ ସୁଖ    ଶରୀର ଦୁଖ    ସୁଖକୁ ହୋଏ ହେତୁ
ଦୂରେ ଅଦୂରେ    ମଦନ ଶରେ    ଅଛନ୍ତି ଏଥି ହେତୁ । ୧୮

ଧଇର୍ଯ୍ୟନାଥ !    ମଦନ ବ୍ୟାଧି    ଔଷଧ ଲେଖା କଲେ
ଧବଳକର    କରେ ତାହାର    ପ୍ରଭା ବଢ଼ଇ ଭଲେ
ଧୂର୍ତ୍ତ-ଧ୍ୱଂସିନ    ବୋଲିବ ତୁ ମୋ    ହୃଦର ଦିବ୍ୟ ବୀଣା
ଧୀରବଚନ !    ବଚନ ସଙ୍ଗେ    ଭୁଲିଲେ ଅତି ଊଣା ।୧୯

ନିରନ୍ତରେ ନେ ତୁ ମୋତେ ସ୍ନେହେ ଦ୍ରବ କରାଉ ଯହିଁ
ନିଶ୍ଚେ ମୁଁ ଚନ୍ଦ୍ର- ମଣି ତୁ ଚନ୍ଦ୍ର ବୋଲି ବୋଲିବ କାହିଁ ।
ନିଶାରେ ବଧୂ କରରେ ବଧୂ— ମଣି ଆର୍ଦ୍ର କରେ
ନବ-ତରୁଣି ! ରମଣୀମଣି ! ତୁ ନିଶି ଦିବସରେ । ୨୦ ।

ପଦ୍ମ-ସୁବାସି ! ପିୟୂଷହାସି ! ପରମ ସୁଖରାଶି
ପଢ଼ିଲି ମୋତେ ପ୍ରମାଦ ତୋତେ ଡ଼ାକିବା କଥା ଆସି
ପୀତ-ବସନା ! ପୀନଜଘନା ! ପୀବରସ୍ତନା ! ତୋତେ
ପିକବଚନା ବୋଲିବାକୁ ତ ଲାଜ ମାଡ଼ଇ ମୋତେ ॥

ଫୁଲ ସମସ୍ତେ ତାର ଉଦୟେ ପୟୋଦ କାଳେ ହତ
ଫେଡ଼ ତା କେତେ କହିବ ଯେତେ ଅବଗୁଣରେ ଖ୍ୟାତ ?
ଫୁଟି ରହିତ ଅବିକମ୍ପିତ ବିରହୀ-ଦୁଖ ଦାନୀ
ଫଳନ୍ତ ଏହି ପୁଣି ଉଠଇ ପଞ୍ଚପ୍ରାଣକୁ ଘେନି । ୨୧

ବିବେକ ଉଣା ହୋଇବ ବୀଣା— ବଚନୀ ବୋଲିବାରେ
ବେଣୀରେ ନାଗ ଘେନିଲେ ନାଗ ନୁଅଇ ତାହା ଠାରେ
ବର୍ଣ୍ଣି ଉଚ୍ଚାର ପ୍ରେମ ପଞ୍ଚାର ବିସ୍ତର ଛାର ନାହିଁ
ବାଜଇ କର— ରୁଦ୍ର ପ୍ରହାର ପାଇଲେ ପୁଣି ସେହି । ୨୩

ଭ୍ରୂଭଙ୍ଗୀ ଲୀଳା କଟାକ୍ଷମାଳା ଚନ୍ଦ୍ରରେ ନୋହେ ଦେଖି
ଭବରେ ଘେନି ଡାକନ୍ତି ଧନି ! ପୂର୍ଣ୍ଣ-ଚନ୍ଦ୍ରମା-ମୁଖୀ
ତଜଇ କ୍ଷୀଣ ମୃଗଲକ୍ଷଣ ଦିବସେ ପଣ୍ଡୁଭାବ
ଭାଷା କହିବା ମନ ମୋହିବା ଭାଗ୍ୟକେ ତାକୁ ଦେବ ?

ମୃଗ-ଖଞ୍ଜନ- ଚକୋର-ମୀନ— ନେତ୍ରୀ ବୋଲିବା କଥା

ମୋହୋ ମନକୁ ଆସଇ ନାହିଁ ହୁଅଇ ମହାବ୍ୟଥା
ମଦନମଦେ ମାତି ତୁ ଯେତେ ବେଳେ ଘୂମାଇ ଶୃହୁଁ
ମହେଶ ଦମ୍ଭ ମହା-ଆରମ୍ଭ ଲେଶେ ରହିବ କାହୁଁ ?॥

ଯୋଗୀନ୍ଦ୍ରମାନେ ଯୋଗ ଆସନେ ନିଷ୍ଟଳେ ଥିବେ ବସି
ଯେବେ ତୁ ହେଲେ ଶୃହିଁବୁ ଡୋଲେ ମଧୁର ମନ୍ଦ ହସି
ଯିବ ତରଳ ଅଙ୍ଗ ଆବଳ ଅନଳ ଜଉ ପ୍ରାୟେ
ଯିବ କି ଜନ୍ମେ କେବେହେଁ ଲୟେ ଜୀବନ ଥିବାଯାଏ । ୨୭

ରୋଲମ୍ବ ଚୁମ୍ବେ ବଧୂଲି ବିମ୍ବେ ପତଙ୍ଗ ଚଞ୍ଚୁ ଲାଗେ
ରଙ୍ଗର ଭଙ୍ଗ ହୋଏ ପତଙ୍ଗ ବିବଶ ମଧୁରାଗେ
ରତନ ମଧ୍ୟେ ପ୍ରବାଳ ପଦ୍ମ- ରାଗ ମାଣିକ୍ୟ ଲେଖି
ରଙ୍ଗ-ଅଧର ପ୍ରାୟେ ତୋହୋର ଶୋଭା କାହିଁ ନ ଦେଖି ।

ଲଘ୍ୟ ହିଁ ଅବା କି କରି ଦେବା ବିବେକ ଦୂର କରି
ଲକ୍ଷଣବନ୍ତ ହୋଇ ଅମୃତ ଅଛୁ ତହିଁରେ ପରି
ଲୋଡ଼ି ମୋ ବୁଦ୍ଧି ଲାବଣ୍ୟନିଧି ହିଦ୍ଧି କରିବ କାହିଁ
ଲୋକପାଳକ ବେନି ଏତେକ ବିଚାର କରି ନାହିଁ ।୨୮।

ବଲ୍ଲଭ! ତୋର ବିନୁ କର୍ପୂର ଚନ୍ଦନ ଆଦି ଯେତେ
ବିଷ ପରାୟେ ପରତେ ହୋଏ ଆଉ କହିବ କେତେ
ବଡ଼ ସମ୍ପତ୍ତି ଥିଲେ ନୃପତି ଅଭାବେ କିଛି ନୋହେ
ବିଷ୍ଣୁ-ଭଗତି ବିନୁ ଅଗତି ଲୋକଙ୍କ କେବେହେଁ ଶୋହେ?

ଶ୍ରୀହରି-ବାଣୀ ଶୁଣି ରମଣୀ— ମଣି ବୋଇଲେ ହସି
ସରାଗ ଚିତ୍ତେ ଡ଼ାକିବ ମୋତେ ଆସ ଗୋ ରାଧା ଦାସି!

ଶ୍ରୀକର ଧର  ମାଗୁଛି ହର  ଏତେକ ଆଜ୍ଞା ଦେବ
ଶ୍ୟାମ ସୁନ୍ଦର  ତୁମ୍ଭ ପୟର  ସେବାରେ ଦିନ ଯିବ ।୩୦।

ସହସ୍ର-କର—  କର ଅମର—  ଗିର ଛୁଇଁ ଲଗ୍ନ ପ୍ରାପ୍ୟେ
ଶ୍ରୀମୁଖୁ ମୋର  ନେତ୍ର ଅନ୍ତର  ନୋହିବ ଥିବା ଯାଏ
ସବୁର ମୁଖେ  ବୋଲିବେ ସୁଖେ  ରାଧା ଶ୍ରୀକୃଷ୍ଣ ଏକ
ଶ୍ରୀ ବୃନ୍ଦାବନ—  ମୃଗରାଜନ !  ଲୋଡ଼ା ମୋ ଏହିଟିକ ॥

ଶ୍ରୀମୁଖେ ଯେତେ  କହିଲ ମୋତେ  କରୁଣାମୟ ବୋଲି
ସବୁ ପ୍ରକାରେ  ଏ ମହିମାରେ  ସହଜେ ବଡ଼ ହେଲି
ସାମନ୍ତ ଯେନା—  ଯେନ ଭାବନା  ସହଜେ ଏହି ମତ
ସାର ରତନ—  ହେବେହେଁ ଅନ  କରେ ଝଟିକ ଜ୍ୟୋତି ॥

ହରଷ ଭରେ  ପ୍ରେମ ବଶରେ  ରାଧା ମାଧବ ବେନି
ହରିଲେ ନାଶି  ପଲଙ୍କେ ବସି  କହି ଏ ଯେନାଯେନ
ହୃଦ ସାରସ  କରି ବିକାଶ  ନିତ୍ୟ କର୍ମକୁ ଗଲେ
ହର ଦଗରେ  ହଂସ ରଥରେ  ବସି ବିଜୟ କଲେ । ୩୩ ।

କ୍ଷମା ସାଗର  ନାଗରବର  ନନ୍ଦନନ୍ଦନ ଲୀଳା
କ୍ଷଷନ୍ଦ ମନେ  ହେ ସାଧୁ ଜନେ  କଣ୍ଠରେ କଁର ମାଳା
କ୍ଷଣେ ଅନ୍ତର  ନ କର କର  ଧର କହୁଛି ଏତେ
କ୍ଷାର ପାମର  ଧାନକୃଷ୍ଣର  ଭାବନା ଅବରତେ । ୩୪ ।

---

# ଦୃଷ୍ଟାନ୍ତ ଚଉତିଶା

---

ନାନା ଦୃଷ୍ଟାନ୍ତ ଦ୍ୱାରା ପ୍ରୀତିଭୂଷଣ ବଶୀଭୂତ ହୋଇଥିବାରୁ ଚଉତିଶାର ନାମ ଦୃଷ୍ଟାନ୍ତ ଚଉତିଶା ହୋଇଅଛି । ପରବର୍ତ୍ତୀ କାଳରେ ଯୁବକ ନୃପତି ପଣ୍ଡିତ ମଧ୍ୟ ଦୀନକୃଷ୍ଣଙ୍କ ଅନୁକରଣରେ ଏହି ନାମର ଗୋଟିଏ ଚଉତିଶା ଲେଖିଥିଲେ ଏବଂ ଦୃଷ୍ଟାନ୍ତ ଚଉତିଶା କହିଲେ ତାଙ୍କର ଚଉତିଶାକୁ ବୁଝାଉଥିଲା । ଦୀନକୃଷ୍ଣଙ୍କର ଏ ଚଉତିଶା ନବାବିଷ୍କୃତ ।

କମଳନୟନ ଦୂତୀ କର ଧରି କହନ୍ତି ବିନୟ କରି
କଉଁ ଦୋଷକୁ ରୋଷ ମୋ ବିଷୟରେ କରିଅଛି ଜୀବେଶ୍ୱରୀ
କାରଣ ନ ଥାଇ ପ୍ରଭୁ କୋପ କଲେ ତହିଁର ନାହିଁ ଉପାୟେ
କେବଳ ଜାଣିଲି କୁମତି ଗୁଆଁର କଥାହିଁ ବୁଝିଲା ପ୍ରାୟେ । ୧ ।

ଖୀନଉଦରୀ ଖଞ୍ଜରୀଟନୟନୀ ସେନେହ ବଜ୍ର ସମାନ
ଖଳ ପିରତି ମେଘ ଛାଇ ପରାୟେ କ୍ଷଣକେ କରୁଛି ଆନ
ଖଣେ ଖଣକେ ତା ସୁଖ ସୁମରି ତ ଲାଗୁଅଛି ମହାଭୟେ
ଖୋଜିଲେ ତ ମୋତେ ବୁଦ୍ଧି ଦିଶୁନାହିଁ ପତିତ ପାଠ ପରାୟେ । ୨ ।

ଗଜଗମନୀ ମୋହୋଠାରେ ଏ ମାନ କେବେହେଁ କରି ନ ଥିଲା
ଗୁଣୁଛି ମୋ ମନେ କେ ଅବା ତାହାକୁ କଉଁ ଉପଦେଶ ଦେଲା
ଗୁପତ କହ ପ୍ରିୟସଖି ! ଏତେହେଁ କହିବୁ ପିକଭାଷୀକି
ଗୁଣ-ଗଉରୀ ହୋଇ ତାର ସେନେହ ଗିରି ନଦୀ ପରି ସଖି ! । ୩ ।

ଘନଜଘନୀ ଯେ ଯେମନ କହୁଥାଇ ତୁମ୍ଭେ ମୋ ନୟନତାରା
ଘନସ୍ତନୀର ଘନସାର ଚନ୍ଦନ କଣ୍ଠ-ଗଜମୋତିହାର
ଘୂର୍ଣ୍ଣାକ୍ଷରେ ଅବା ଘଣ୍ଟଣିଲପନୀ ଏମନ୍ତ ମନେ ଭାସିଲା
ଙନ ବଜୁଲୀ ସ୍ନେହ ଛଇ ପସ୍ତ୍ୟେ ଏହୁଠାରେ ସେ ଦର୍ଶିଲା । ୪ ।

ନବ ରସରେ ଯେ ରସିକ ନୁହଇ ସେହୁ ନାଶ ଯାଉ ବେଳେ
ନବ ସୁଧାକର ଆଦର ଯେମନ୍ତ ନ ଥାଉ ସର୍ବଦା କାଳେ ।
ନାହିଁ ଇକ୍ଷୁ ରସୁଁ ଫସାରେ ମଧୁର ପାକେ ସେ ହୁଅଇ ପିଠା
ନାଗରୀରଞ୍ଜନ ନୟନ ପ୍ରତିମା ପ୍ରତକ୍ଷେ ଏବେ କଲା ତା । ୫ ।

ଚାରୁ ଚାମୀକର ଚମ୍ପକବରନା କାଲି ଏହୁ ବାଟେ ଗଲା
ଚନ୍ଦ୍ରଅବତଂସ ନନ୍ଦନ ଜନମ ତଥି ଚନ୍ଦ୍ର ମୋତେ କଲା
ଚତୁର ଚତୋଇ ସେ ଚରିତ ମୋହୋର ଅଙ୍ଗ ହୋଉଛି ଅବଶ
ଚକ୍ଷୁ ପଲକ ଯେ ସହି ନ ପାରଇ ସେ କଲା ଏତେ ନିରାଶ । ୬ ।

ଛାଡ଼ି ନ ଯାଇ ରହିଛନ୍ତି ଛାର ଜୀବ କହିବାକୁ ପୁଣି ଏହା
ଛଣେ ଦେଖି ଯାହା ଶୁଣିହିଁ ନ ଥିଲା ଭୂଷଣ କଲାଣି ତାହା
ଛାଇ ଅନୁରୂପେ ତଳିଲେ ତାହାର ହୃଦୟ ନୋହିଲା ଜାଣି
ଛାଡ଼ିଲା ବକା କୁସୁମ ପୁଷ୍ପ ପ୍ରାୟେ ହେଲା ସେ ରମଣୀମଣି । ୭ ।

ଯେତେ ଭରସା ଥିଲା ତାର ତାହାଙ୍କ ଦୟା-ଜଳନିଧି ବୋଲି
ଜାଣି ତ ହୋଇଲା ଏହୁଠାରେ ସବୁ ଯାହାର ଯେମନ୍ତ ଗୁଳି
ଜଳରେ କୁମୁଦ ଗଗନେ ଚନ୍ଦ୍ରମା ଦୂରୁ ଦେଖି ହୋଏ ସୁଖୀ
ଜୀବ ପରମ ପ୍ରାୟେ ପ୍ରାଣବନ୍ଧୁଙ୍କୁ ନିକଟେ ଥିଲେ ନ ଦେଖି । ୮ ।

ଝଲଗଉରୀ ଶ୍ରୀମୁଖଚନ୍ଦ୍ରଠାରୁ ହସି ଅନାଇବା ଯାଏ
ଝିମିଟେ ମନ ନୟନ ଛାଡ଼ି ନାହିଁ ରତନଝଟକ ପ୍ରାୟେ

ଝସକେତନ-କେଳି-ଚିନ୍ତାମଣି କି ଲଭି ହେଲି ଚିନ୍ତାମଣି
ଝଡ଼ଇ ନାହିଁ ଦରିଦ୍ରତା ଭଣ୍ଡାର ନିକଟେ ଥିଲେ ସେ ପୁଣି । ୯ ।

ଞୀରଜନୟନୀ ଅନେକ ଯତନେ ଯେବେ ହେଲେ କଲି ଦୂର
ଞିଷ୍ଟେ ଜାଣି ହେଲି ଭାବବତୀ ଭାବ କୁସୁମ ଗର୍ଭ ପ୍ରକାର
ନ ଯିବ ମୋହୋର ମନରୁ ସେ କଥା ଯେତେ ସୁଦୟା ସେ କଲେ
ନାଶଇ କି ପୂର୍ବ ସନ୍ତାପ ବହୁତ ଦିନ ଚିରକାଳ କଲେ । ୧୦ ।

ଟେକି ଯେ ଟେକସ୍ତନୀ କି ମୁ ଭଜିଲି ଟାଣ ମନସିଜ ଭୟେ
ଟିକାଏ ସେ ମନୁ ନ ଟଳିଲା ମୋର ହିରମାଳିକା ପରାୟେ
ଟଙ୍କଧର-ରିପୁ ଟୋପେ ପଡ଼ି ଏବେ ହେଲେ ହୋଇଅଛି ହତ
ଟାଣ ମୃଗାରି ମୃଗ ମୁଖେ ପଡିଲେ ଯେମନ୍ତ ମହାଗର୍ବିତ । ୧୧ ।

ଠାକୁରାଣୀ ପଣ ଏହିଠାରୁ ତାର ଜାଣିମାକୁ ହେଲା ସଖି !
ଠାଠିକ କରି ଯାହା ଦୋଷ ନ କହି ଶ୍ରେଷ୍ଠକଳା ଚନ୍ଦ୍ରମୁଖୀ
ଠାକୁର ହୋଇ ଠାବ କଲା କହିଲେ ସବୁରି ସେ ହନମତ
ଠିକ ଲୋକଙ୍କର କରେ ରଙ୍ଗ ଥିଲେ ଭ୍ରମେ ବୋଲାଏ ରଜତ ॥

ଡ଼ରୁଥାଇ ତାର ମୁଖ ମଳନକୁ ତାମ୍ବୂଳୀ ତାମ୍ବୂଳ ପ୍ରାୟେ
ଡରୁ ଡରୁ ଦେଖି ଦଇବ କଷଣ କଲା କାମଡକା ଯାଏ
ଡୋଲା ଡ଼ାଳିମ୍ବବୀଜଦନ୍ତୀ ପରାୟେ ଡ଼ମ୍ବରୁ-ମଧ୍ୟାକୁ କହି
ଡ଼ୋଲେ ଦେଖୁଁ ଦେଖୁଁ ତକାଇତ ପ୍ରାୟେ ଅଛହିଁ ଦାରୁଣ ନିନ୍ଦ୍ରା ।୧୩

ଢ଼ଗ ମେଲିବେ ଅଙ୍ଗ ଏହା ଶୁଣିଲେ ଏହି ଗୋପବଧୂମାନେ
ଢ଼ାଙ୍କୁଣି ପିନ୍ଧିଲେ ଫେର ଧରି କରି ଉଭାରଇ ଫଣୀ ଯେସନେ ।
ଢାଳ ନୟନେ ଯେ କହୁଥାଇ ବନ୍ଧୁ ଏକ ଜୀବ ବେନି କାୟେ
ଢାଳେ ତା ଜାଣିଲି କୃପଣ ଲୋଭୀଙ୍କ ଆଶା ଦେଖାଇଲା ପ୍ରାୟେ ॥

ଆଉ ଅଧିକ କି କହିବି ସଜନି ! ଦିନେ ଚନ୍ଦ୍ର ରଜନୀରେ
ଅଙ୍କେ ମୋର ଶୋଇ ଅନ୍ତର ମଣିଲୁ ପୁଲକ ଯେନାଯେନରେ
ଏବେ ଦଇବ ବଳରେ ସେ ସ୍ନେହ ନଉନ ଦିଶିଲା ଏତେ
ଅବନୀବତୀର ମହା ସ୍ନେହ ଯେସ୍ନେ ପ୍ରକାଶିଲା କାଚବାଡ଼େ । ୧୫ ।

ଝିପୁରସୁନ୍ଦରୀ ତପନୀୟଗୋରୀ ହୃଦର ପଦକ ମୋର -
ତାହାବିନୁ ତପସ୍ୱି ଯୋଗୀ ପ୍ରାୟେ ବିଷୟ କଲି ଅନ୍ତର
ଭୁଙ୍ଗସ୍ତ୍ରୀ ଯେ ଅଙ୍ଗହାର ପରାୟେ କରୁଛି ମୋତେ ସଙ୍ଗରୁ
ଭୁ ତାହାର ମନ ଯେନାଇ କହ ଯେ ହାର ପ୍ରାୟେ ମୋତେ କରୁ ॥

ଥିରଗମନୀ ବିମନ ହୋଇବାରୁ ଥୟେ ନୋହେ ମୋର ମନ
ଥିର ନୋହେ ଯେସ୍ନେ ଘନେ ଘନଲତା ବନଜ ପଲ୍ଲବେ ବନ
ଥିରମଣ୍ଡିନୀ ମଣ୍ଡନ ଥାଉଁ ଯେବେ ମୋହୋର ହେଲା ଏ ଦଶା
ଥୂଲ-ନିତମ୍ବାକୁ କହିବ ଏବେହେଁ ହେଲାନି ନିଧନ ଦଶା । ୧୬ ।

ଦ୍ୱିରଦଗମନୀ ଦ୍ୱିଜରାଜମୁଖୀ ଦୟା ଅଦୟା ଅଦୃଶେ
ଦହି ହୋଉଛି ଦାରୁଣ ଅବିବେକ, ଦୁଆର ଉଷୂକ ଆସେ
ଦୂରୁ ଦେଖିଲେ ଦେବତାଙ୍କୁ ଗୃହିଁବା ଦିଅଇ ନରମାନଙ୍କୁ
ଦେବତାଙ୍କୁ ଚହି ପ୍ରତିମା କରଇ ଏ ନିକ ବିଚାର ତାଙ୍କୁ । ୧୮ ।

ଧରଣୀରେ ମୀନ ଜୀବନ ପରାୟେ ଯାହା ତାକୁ ମୋତେ କଲା
ଧରୁଛି କେବଳ ତା ବିନୁ ଶରୀର ନୁହଇ ଏ ଚିତ୍ତ ଭଲା
ଧ୍ୱଂସିଦେଲେ କାମ ଅନଳେ ମୋ ଦୁଃଖ ନ ଯେନାଲା ପ୍ରାଣମଣି
ଧ୍ରୁବ ଏ କଥା ବ୍ୟାଧିବନ୍ତ ଆରତ ବୈଦ୍ୟଠାରୁ ନାହିଁ ଶୁଣି । ୧୯ ।

ନାଗଶ୍ୱରତନ ଅନ୍ତପଠ ଅନ୍ତ ନୃତ୍ୟକାରୀ ପ୍ରାୟେ ହୋଇ
ନୟନ ମନଙ୍କୁ ଉଚ୍ଛାହା କରୁଛି ଦର୍ଶନ ସୁଖ ନ ଦେଇ

ନବଘନଙ୍କୁ ଚାତକ ପକ୍ଷୀ ପ୍ରାୟେ ତାହାଙ୍କୁ ମୋହୋର ଆଶା
ନଷ୍ଟପ୍ରାୟେ ଯେବେ ସେ ନିରାଶ କରିବ ତେବେ ମୋ ନିଧନ ଦଶା ॥

ପ୍ରାଣପ୍ରିୟା ଦୟା-ଜଳନିଧି ହୋଇ ପ୍ରମାଦ ମୋଠାରେ କଲା
ପଶୁପତି-ଶତ୍ରୁସନ୍ତାପ ଅନଳେ ପକାଇ ଅଲଗା ହେଲା
ପ୍ରାଣବାନ୍ଧବୀ ପରିତ୍ରାଣ ନ କଲେ ନିଶ୍ଚେ ଜୀବ ଯିବ ଜଳି
ପଙ୍କଜଙ୍କର ଦରଶନେ ଯେମନ୍ତେ ଫୁଟିଲା ଗଙ୍ଗଶିଉଳି । ୨୧ ।

ଫାଇ କାଳକୁ ମୁଁ ଫନ୍ଦା କରିଥିଲି ଫୁଲ୍ଲ-କମଳନେତ୍ରୀଙ୍କ
ଫଳ ଥାଉଁ ମୂଳ ଭୋଗ ତ ହୋଉଛି ଫୁଲ ବିଶିଖ-ପତିଙ୍କ
ଫେରି କହିବ କାହାକୁ ଏ ବେଦନା ଫେଡ଼ିବ କେ ମୋର ଦୁଃଖ
ଫୁଲ ବାହାରେ ଆନ ନକ ଫୁରୁଣା କରି ପାରେ ଶିଳୀମୁଖ । ୨୨ ।

ବଧୂବଦନୀ ବିନୁ ବୁଦ୍ଧି ଚନ୍ଦ୍ରମା ଚନ୍ଦନ ବଧିର କରେ
ବାଳଶ ନଗର ପଣ୍ଡିତ ପରାୟେ ବୁଲିଲେ ଦିନ ନ ସରେ
ବିକଦେଲା ଦାସ ଜନଠାରେ ଶ୍ରେଷ୍ଠ ଯେବେ କଲା ରସବତୀ
ବାତ ରହିତ ବୋହିତ ପ୍ରାୟେ ତେବେ ମୋହୋର ଆଉ କି ଗତି ?॥

ଭରସା କେବଳ ତୋହାଠାରେ ତାଙ୍କୁ କହିବୁ ମୋ ଦୁଃଖ ଘେନି
ଭାଗ୍ୟଥିଲେ ସେ ଭବରିପୁ ତାପରୁ ତାରିବ ମନମୋହିନୀ
ଭାବିନୀ ମୋତେ ସତେ ଭିନ୍ନ କରିବ ଭ୍ରାନ୍ତ ନ କରି କିଛି
ଭାବନିଧି ଠାରେ କର ପ୍ରାପ୍ତେ ହୋଇ ଦ୍ରବ୍ୟ କଠିନତା ଅଛି ।୨୪।

ମନ୍ଦରନୟନୀ ଘେନାଘେନି ଭାବ ଅମୃତ କ୍ଷୀର ସମାନ
ମରାଳ କେତନ ମାନସ ମଦନ ପ୍ରାପ୍ତେ କଲା ଉନ୍ମାଦନ
ମେଘଚନ୍ଦ୍ର ବିନୁ ଚାତକ ଚକୋର ଜୀଅନ୍ତି ଆନ ଉପାୟେ
ମହାମନ୍ତ୍ରୀ ମୋର ପୁଣି ଏମନ୍ତ ମଧୁକର ମଧୁ ପ୍ରାପ୍ତେ । ୨୫ ।

ଜାଣୁମଣି ମୋତେ ଗୁରୁ ବାମ ହେଲ ବାମଦେବ ବାମ କରେ
ଯାହା ସେ ଲଘୁତରେ ଲଘୁ କରାଇଲ ଅଲୋକତ ସେ ଲୋକରେ
ଜାଣିଥିଲି ତାର ହୃଦ ଅନୁରାଗ ଶାଳକା ଫୁଲ ପରାଏ
ଜାଣୁ ଜାଣୁ ଏବେ ଗଲା ସେ ଷଷ୍ଟକ ସଙ୍ଗତେ ଭୁଲବା ଯାଏ । ୨୬

ରଙ୍ଗେ ତା ଯେବଳେ ସେବନ୍ତି ଦୁର୍ଲଭ ସୁଲଭ ନୋହେ ବିଷାଦେ
ରମଣୀମଣି ସେହିମତ ସହାଗ ରଖି ରାଗ କରେ ଖେଦେ
ରଙ୍କରତନ ପାଇଲା ପ୍ରାଏ ହୋଇ ମୁଖୁଁ ନ ଆସଇ ଭାଷା
ରଖିଥିଲ ନଷ୍ଟ ମୋହପାଇଁ ବହି ରଥାଙ୍ଗ ରଜନୀ ଦଶା । ୨୭ ।

ଲେଶେ ତାର ମୋର ଅନ୍ତର ନ ଥିଲା ନେତ୍ର ପଲକ ଯେମନ୍ତ
ଲୋକନାଥ ବଶେ ଏ ଶେଷ ହୋଇଲା ଆକାଶ କୁସୁମବନ୍ତ
ଲୋଚନ-ଶ୍ରବଣ-ମଣ୍ଡନ ଖଣ୍ଡନ କରବେ ଯତେ ବିଷାଦ
ଲମ୍ବଉଦରଙ୍କୁ ଲକ୍ଷେ ଲଡୁ ଦେବି ସେ ଯେବେ ହେବ ପ୍ରସାଦ । ୨୮ ।

ବାଇ ପ୍ରାଏ ହୋଇଥିଲେ ପ୍ରତ ଚକ୍ଷୁ ଯେମନ୍ତ ବର୍ଣ୍ଣି ହଣଇ
ବଧୂବଦନୀ ସେହିମତ ଅନ୍ତରେ ଥିଲେ ନେତ୍ର ବିକାଶଇ
ବହୁତ ସୁଖ ହୋଇ ଇନ୍ଦ୍ରପଦବୀ ସ୍ୱପନେ ପାଇଲା ପ୍ରାଏ
ବାଞ୍ଛା ଧନ ପ୍ରାଏ ଭୋଗକୁ ନ ଆସେ ହୃଦକୁ କରଇ କ୍ଷୟେ । ୨୯ ।

ସବୁ ଅନୁଭବ ଏହିଠାରୁ ହେଲା ଶଶୀମୁଖି-ମହିମାରୁଁ
ଶୁଭଦାୟିନୀ ସନ୍ତୋଷ ହୋଇ ଏବେ ପାଶେ ନେଇ ଦାସ କରୁ
ସରୂପ ସର୍ପକୁ ପଶୁ ଦେଲା ପ୍ରାଏ କନ୍ଦର୍ପକୁ ଦେଲା ଜୟେ
ସର ହୋଇ ଦୁଇ ଆଡ଼କୁ କାଟଇ ଶଙ୍ଖାର କରତ ପ୍ରାଏ । ୩୦ ।

ଶମନ ଶମନ ସମ ଅଦାଲ୍‌ତା ତାହାଠାରେ କି ବନୟେ
ଶମ୍ଭୁ ଜଳରେ ତାହାକୁ ନାଶଇଛି ଲୋହ ପାଷାଣ ପରାଏ ।

ସମଗ୍ର ତୋତେ କେତେ ପୁଣି କହିବି ତୁ ତ ସବୁ ଗୁଣ-ସୀମା
ସଭାସଦ ପ୍ରାୟେ ଉଚିତ କହି ତୁ ମୋ ଦୋଷ କରିଥ କ୍ଷମା ।୩୧।

ସଜନି! ତୋତେ ସେ ଦେଖିଲେ ପଥର ଯେ ହୋଇବ ପୁଷ୍ପ ସମାନ
ସବୁ ଅର୍ଥେ ଅନୁରାଗ ପୂର୍ଣ୍ଣ କରି ମୁଖେ ପ୍ରକାଶିବ ଆନ ।
ସେହି ସମ୍ପ୍ରୀରୁ ପଣ୍ଟ କରଣ ତୁ କହିବୁ ମୋର ସନ୍ଦେଶ
ସୁଜନ ସାଧୁ ଉପଦେଶ ପାଇଲା ପରାୟେ ହେବ ସନ୍ତୋଷ ।୩୨।

ହରଣନୟନୀ ପୟପେଠୀ ପ୍ରାୟେ ବାହାରକୁ ସେ କର୍କଶ
ହୃଦୟ ଯାର ପରିପୂର୍ଣ୍ଣ ହୋଇଛି ସୁମଧୁର ଘନରସ ।
ହଂସଗମନୀ ପାଶକୁ ତୋ ସଙ୍ଗତେ ମନକୁ ସମର୍ପି ଦେଇ
ହୃଦୟ ଶୂନ୍ୟ ହୋଇ ରହି ଅଛନ୍ତି ସଙ୍ଗ ସହର୍ଷକୁ ବହି ।୩୩।

କ୍ଷମେ ଚଳ ମୁଁ ଏହି କୁଞ୍ଜେ ରହିଲି ତୋହୋ ଆସିବାକୁ ଚାହିଁ
କ୍ଷୋଭ ରହିତ ପକ୍ଷୀ ପରାୟେ ଗୋପ୍ର ଆକୃତ ଦଶାକୁ ବହି ।
କ୍ଷଛନ ହୋଇ ଦୂତୀ ବେଗେ ଚଳଲା ଖିତିମଣ୍ଡଳକୁ ରଖି
କ୍ଷୀଣମତି ସାନକୃଷ୍ଣ କହେ ଯେହ୍ନେ ଆନନ୍ଦ ବଶରେ ହୋଇଖୀ ।୩୪।



# ଶ୍ରୀ ରାଧିକାସ୍ମରଣ ଚଉତିଶା

ନବାବିଷ୍କୃତ ଏହି ଚଉତିଶାରେ ଦୀନକୃଷ୍ଣ ମଥୁରାପ୍ରବାସୀ ଶ୍ରୀକୃଷ୍ଣଙ୍କର ରାଧାବିରହ-ଜନିତ ଅକୁଳତା ଯେଉଁ ଦକ୍ଷତା ସହ ବର୍ଣ୍ଣନ କରିଅଛନ୍ତି ତାହା ତାଙ୍କରି ପକ୍ଷରେ କେବଳ ସମ୍ଭବ । ପ୍ରତି ପଂକ୍ତିରେ ବିରହ-ଅଗ୍ନିର ଦୀପ୍ତ ଶିଖା ଯେପରି ଜୀବନ୍ତ ହୋଇ ପଡ଼ି ଉଠିଅଛି । ଯେଉଁ ବ୍ରଜବିହାରରସିକ ଭକ୍ତଗଣଙ୍କର ବିରହରେ ବିଳାସ, କହିବା ବାହୁଲ୍ୟ, ଶ୍ରୀ ରାଧିକାସ୍ମରଣ ଚଉତିଶା ସେମାନଙ୍କର ନିତ୍ୟ କଣ୍ଠରତ୍ନହାର ହେବ ।

କମଳନୟନ କଂସ କଟକରେ କରନ୍ତି ବିହାର ।
କି କରୁଥିବ ସେ କଳକଣ୍ଠକଣ୍ଠୀ ରାଧିକା ମୋହୋର ।
କଣ୍ଠର ଅମୂଲ୍ୟ ନକ୍ଷତ୍ରକଣ୍ଠୀ ମୋ ନୟନପ୍ରତିମା ।
କି ବିହରୁଥିବ କେହି ବଞ୍ଚୁଥିବ ଅହ୍ୱାରେ ମୋ ରାମା ।

ଖୋଜିଲେ ସକଳ ବ୍ରହ୍ମାଣ୍ଡେ ଯାହାକୁ ନ ପାଇ ସମାନ
ଖଳ ଦଇବ ବଶରୁ ଛାଡ଼ି ତାକୁ କଲି ମୁଁ ଗମନ ।
ଖଣ୍ଡ ଖଣ୍ଡ ହୋଇ ଫାଟି ତ ନ ଯାଇ ହୃଦୟ ମୋହୋର
ଖଞ୍ଜନାନେତ୍ରୀ ବିନୁ ଯାହା ରହିଛି ଧିକ ଏ ଶରୀର । ୨ ।

ଗଜେନ୍ଦ୍ରଗମନୀ ଗୋରୀ ସୁକୁମାରୀ ମୋ ପ୍ରାଣଈଶ୍ୱରୀ
ଗାଉଥିବ ମୋର ଗୁଣ ନିରନ୍ତରେ ସୁମରି ସୁମରି ।
ଗୁଣି କେତେବେଳେ ଅବଧିବଚନ ଛାଡ଼ିବ ନିଶ୍ୱାସ
ଗୁଆଁରଠାରୁ ଗୁଣବନ୍ତ ପରାୟେ ହେବନି ନିରାଶ ୩ ।

୩-୨--ମୋର ଗୁଣ କେତେବେଳେ (ଖ)

ଘନ ଘନ ହୋଇ ଯେନ ଜ୍ୱଳୁଥିବ ଘରନ୍ଧ ଅନଳ
ଘେନବାରୁ ମୋର ଅନ୍ତଃଶଯ୍ୟ ଘନ ସେନେହ ପ୍ରବଳ ।
ଘର ବାହାର ସମାନ ମଣୁଥିବ ରମଣୀରତନ
ଘେନୁଥିବ ନାହିଁ ସଜନୀମାନଙ୍କ ଶୀତଳ ବଚନ । ୪ ।

ନବୀନବୟସୀ ପ୍ରାଣବାନ୍ଧବୀ ମୋ ପାଇଲା ବେଦନା
ନିର୍ଲଜ୍ଜ ଜୀବନ ନ ଯାଇ କିନା ତା କରୁଛୁ ଭାବନା ।
ନାହିଁ ଯାହାକୁ ସପନେ ଦୁଃଖ ଭେଟ ତାହାକୁ ଏ ଦଶା
ନଷ୍ଟେ ନାଶ ଯାଉ ନିଷ୍ଠୁର ନାହାକୁ କଲେହେଁ ଭରସା ।୫।

ଚନ୍ଦ୍ରକର ଚନ୍ଦ୍ରମଣିଙ୍କି ଆର୍ଦ୍ର କରଇ ଯେମନ୍ତ
ଚଣ୍ଡକର ଚଣ୍ଡମଣିଙ୍କି ଆଦ୍ର ଯେ ନ କରେ ତେମନ୍ତ ।
ଚନ୍ଦନ ଶୀତଳ ଦ୍ରବ ଯେନ ଦ୍ରବ୍ୟ ତାପକୁ ହରଇ
ଚୂର କର୍ପୂର ଅନଳେ ଦେଲେ ସବୁ ପ୍ରକାରେ ସରଇ । ୬ ।

ଛାର କଂସନୃପ ବୋଲେଣି ଛାଡ଼ି ମୁଁ ଅଇଲି ତାହାକୁ
ଛାର ମାର ହେଲି ଆପଣା ଇଚ୍ଛାୟେ କହିବ କାହାକୁ ।
ଛାଇ ପ୍ରାୟେ ହୋଇ ନିରନ୍ତରେ ଲଟିଥାଇ ମୋ ସଙ୍ଗରେ
ଛାଡ଼ି ତାକୁ ଛାର ଜୀବନ ରହିଣ ଅଛି ମୋ ଅଙ୍ଗରେ । ୭ ।

୪-୪—ଘେନୁ ନ ଥିବ ସେ (ଗ)
୫-୧—ନବୀନ ବୟସେ (ଙ)
୫-୨—ନ ଯାଇ ଜୀବନ କିମ୍ପା ବୁଝ ତାହା କରୁଛ ଚିନ୍ତା ( ଖ )
୬-୨—ଚଣ୍ଡକର ଚନ୍ଦ୍ରମଣିଙ୍କ (ଗ)

ଯେତେ ପ୍ରକାରେ ସୁଖ ମୋତେ ଦେଇଛୁ ମୋ ପ୍ରାଣବନିତା
ଜପାମାଳୀ କରି ଜପିଲେ କେ ତାହା କରିବ ଗଣିତା ।
ଜୀଇ ଥିବା ଯାଏଁ ଯିବ କି ମନରୁ ତାହାର ସେନେହ
ଯାବତ ପ୍ରକାରେ ଜମ୍ବୁନଦଗୋଷ୍ଠୀ କିଣିଛୁ ଏ ଦେହ । ୮ ।

ଝୁରୁ ଯେ ଥିବ କୁରରୀ ପକ୍ଷୀ ପ୍ରାୟେ ହରାଇ ବିବେକ
ଝର ପ୍ରାୟେ ଝର ଝର ବହୁଥିବ ନୟନୁ ଲୋତକ ।
ଝାମ ଯାଉଥିବ ଝସକେତୁ-ଶରେ ଝଲକବଦନୀ
ଝାଳ ଅଙ୍ଗେ ଝଳ ଯାଉଥିବ ଝୀନ ସୁରଙ୍ଗ ପଦ୍ମିନୀ । ୯ ।

ନ ରୁଚୁଥିବ କର୍ପୂର ଚନ୍ଦନାଦି ଲେପନ ବିଧାନ
ନାନାରତ୍ନ ଆଭରଣେ ହୋଉଥିବ ଦୂଷଣ ସମାନ ।
ନେତ୍ରମାନେ ଭାସିଯିବା ଡରେ ନିଦ୍ରା ଆସିବ କାହିଁକି
ନ କଲା ବିଧାତା ଆଉ କେଡେ ଗଢ ବିରହୀ ଦେହୀଙ୍କି । ୧୦ ।

ଟଳ ଟଳ ହୋଇ ଟଳି ପଡୁଥିବ ଅନଙ୍ଗ ଅବଶେ
ଟେକି ଲାବଣ୍ୟ ଟାଣ ମାତ୍ର ଥିବ ତା ସେ କୁଚ-କଲଶେ ।
ଟେକି କେତେବେଳେ ସଖୀମାନେ ସ୍ନେହେ ପକାଇ ଅଙ୍କରେ
ଟେକସ୍ୱର ହୋଇ ଡାକୁଥିବେ ଟଙ୍କଧରଙ୍କୁ ଉଚ୍ଚରେ । ୧୧ ।

୯-୩—ଝଲକି ବଦନୀ । ଗ ।
୯-୪—ଝାଳେ-ଝଳ ଯାଉଥିବ ଝୀନ ଜାଲ ବସନ୍ତ ପଦ୍ମିନୀ । ଗ ।
୧୦-୨—ମଣୁଥିବ ଦୂଷଣ ସମାନ (ଗ)
୧୧-୧—ଟଳି ପଡୁଥିବ ଅନଙ୍ଗ ଅନଳେ (ଖ)
୧୧-୨—ଲାବଣ୍ୟଠାଣ ଥିବ କେବଳ ଉରଜ ଯୁଗଳେ (ଖ)
ଲାବଣ୍ୟ କେବଳ ଥିବ ତାର (ଗ)
୧୧-୪—ଡାକୁଥିବେ ଟଙ୍କଧରକୁ ଉଚ୍ଚରେ (ଖ) ଟେକସ୍ୱରେ ଡାକ ଦେଉଥିବ (ଗ)

ଠାକୁରାଣୀ ପଣି ଲକ୍ଷଣ ତାହାର ଅପାରୁ ଅପାର
ଠାଠିକ କରି ତାହାଠାରେ କଲି ମୁଁ ଠକଙ୍କ ବେଭାର ।
ଠିଆ ହୋଇ ଯେ ଚାହିଁଥାଇ ଗୋଧନ ବାହୁଡ଼ା ସମୟେ
ଠାଠିକ ଆଷାଢ଼ ମେଘକୁ ତୃଷିତ ଚାତକ ପରାୟେ । ୧୨ ।

ତେତେଥାଇ ନେତ୍ର ଶ୍ରବଣ ମୋହୋର ମୁରଲୀ ଧ୍ୱନଙ୍କ
ତୋଳେ ଦେଖୁ ଦେଖୁ ଛାଡ଼ି ମୁଁ ଅଇଲି ଜୀବନ-ଧନୀଙ୍କ
ତେଉ ଶ୍ରବଣ ନେତ୍ର ଏବେ କାହାକୁ କରିବ ଭରସା
ତକା ତ ହେଲା ମୋ ତାଳମ୍ବଦନ୍ତୀଙ୍କ ଥିଲା ଯେ ଯେ ଦଶା ।୧୩।

ଥାଳ କରେ ଗଣ୍ଡପାଳି ଭାଳୁଥିବ ମୋହୋର ପ୍ରସଙ୍ଗ
ଥଳଥିବ ତାର ସୁରଙ୍ଗ-କୁରଙ୍ଗ-ନୟନ-ତରଙ୍ଗ ।
ଥାଳେ ମୋର ଦୟା ଉପ୍ରୋଧ ନାହିଁ, ମୁଁ ଅତହିଁ ଦାରୁଣ ।
ଥୋକଲା ଅମୃତ ଥାଳଦେଇ ଏବେ କରୁଛି କାରୁଣ । ୧୪ ।

ଆହା ରେ ଅଳକ୍ଷସୁଖି ! ଶଶୀମୁଖି ! ଆହା ରେ ସଜନ !
ଏହା ଅରଜିଲ ତୋ ବନ୍ଧୁ ବଞ୍ଚିଲ ଏ ମଧୁ ରଜନୀ ।
ଏମନ୍ତେ କଥା ମୋ କର୍ମରେ କେଁ ଲେଖିଥିଲା ସେ ଦଇବ
ଅଧପ୍ରାଣ ଯାଇ ଅର୍ଧପ୍ରାଣ ଥାଇ ଏ ଦେହ ସହିବ । ୧୫ ।

ତାପ-ତଟିନୀ ତଟ ତରୁ ହୋଇଛି ହୃଦୟ ମୋହୋର
ତହିଁ ପୁଣି କାମ କରୁଅଛି ଶର ବରଷା ପ୍ରଖର ।

୧୩-୩—ତେବଣ ଶ୍ରବଣ ନୟନ କାହାର (ଗ)   ୧୩-୪—ଥିଲ ଯେତେ ଦଶା (ଖ)
୧୫-୨—ଏହା ଅର୍ଜିଥିଲ ତୋ ବନ୍ଧୁ ବଞ୍ଚିଲ ଏ ଚନ୍ଦ୍ରରଜନୀ (ଗ)
୧୬-୧—ତାପ ତଟିନୀ ତଟତରୁ ପରାଏ ଜୀବନ (ଖ)

ତାହା ଦୁଃଖେ ଦୁଃଖୀ ଯାହା ସୁଖେ ସୁଖୀ ସିନା ଏ ଶରୀର ।
ତଥାପି ତରୁଣୀମଣି କଥାକୁ ମୋ ହୋଉଛି ବଧିର । ୧୬ ।

ଥରୁ ଯେ ଥିବ ମଦନ ପରଶରେ ଥରହରହୃଦୟା
ଥରେ ଥରେ ବୋଲୁଥିବ ପ୍ରାଣବନ୍ଧୁ ଅଟନ୍ତି ନିର୍ଦ୍ଦୟା
ଥିବ ନ କି ତାର ସେ ଚନ୍ଦ୍ରବଦନେ ସେ କାଳ ପ୍ରସନ୍ନ
ଥିବାକାଳେ ତାହା ପାଶେ ଯାହା ଦେଖିଥିଲା ଏ ନୟନ ।୧୭।

ଦୂର କରିଥିବ ଦରହାସକୁ ସେ ବନ୍ଧୁକ-ଅଧର
ଦଇବେ ନିଶ୍ୱାସ ରଖି ନ ଥିବ ତା ସୁରଙ୍ଗ ବେଶର ।
ଦବ୍ୟ କନକ କେତକୀ ଦେହ ଛାଡ଼ିଥିବ ତା ଝଲକ
ଦୁର୍ବଳ ଭାବରୁ ବନ୍ଧୁ ନ ଥିବ ସେ ମୁକ୍ତା ମାଳକ । ୧୮ ।

ଧୀରେ ସଖୀମାନେ ଅନାଇଁ ଧରଣୀମଣ୍ଡଳୀ ମୂର୍ତ୍ତିକ
ଧଇର୍ଯ୍ୟ ହରାଇ ଧକ୍କାରୁଥିବେ ମୋ ପ୍ରମାଦ ପ୍ରୀତିକ ।
ଧ୍ରୁବ ହୋଇ ଧ୍ରୁବ ଲୋକେ ଯହିଁ ପ୍ରୀତି କରିଛି ପ୍ରକଟ
ଧାତା ହଟ ଦେଖ ତହିଁ ପୁଣି କଲା ଏମନ୍ତ କପଟ । ୧୯ ।

ନ କରନ୍ତ କାଳ କେତେବେଳେ କାହା କି ନୋହେ ଏ ଦେହ
ନେଇ ପଲ୍ଲବ ଯେ ନ ସହେ ସହିଲା ସେ ଏତେ ବିରହ ।

୧୮ ପଦର ୧ମ ଓ ୨ୟ ପାଦ ସଂଯୋଗରେ ୩ୟ ଓ ୪ର୍ଥ ପାଦରୂପେ ପଠିତ—
୧୮-୩-୪—ଦୂରକର ଦେଉଥିବ ଦ୍ରୁ ହାସକୁ ବନ୍ଧୂକ ଅଧରୁ । ଦଣ୍ଡକେ ନିଶ୍ୱାସ ରଖୁ ନ
ଥିବ ସେ କୁସୁମ ନାସାରୁ ।
୧୯-୩—ହୋଇଛି ପ୍ରକଟ (ଗ)

ନୃପତି ସମ୍ପତ୍ତି କେତେବେଳେ କେତେବେଳେହେଁ ଧୀନତା
ନ ଥିବା ଥିବା ଥିବା ନ ଥିବା କରେ ଦଇବ ବିଧାତା । ୧୦ ।

ପ୍ରାଣବାନ୍ଧବୀ ମୁଖ କାହିଁ ଚାହିଁବ, କାହିଁ ଏ ସନ୍ତାପ
ପଡ଼ିଲା ଅମୃତ ବୃଷ୍ଟିରେ ବରଷା ପାଷାଣ କଲାପ ।
ପୀତବସନୀ ମନ୍ତ୍ରପିକବଚନୀ ଚମ୍ପକବରନୀ
ପୁଷ୍ପକାଳପ୍ରାପ୍ୟେ ସୁଖଦ ପଲ୍ଲବ ଦଶନବସନୀ ।୧୧ ।

ଫୁରୁଣାରେ ଫୁଲ୍ଲ କୁସୁମ ଦେଖି ଯେ ହୁଅଇ ଅଥିର
ଫୁଲୁଥାଇ ଫୁଲ୍ଲ କଦମ୍ବ ପରାପ୍ରେ କେତକୀ ଶରୀର ।
ଫାନ୍ଦ ଯାଉଥିବ ହୃଦପ୍ତ ଏବେ ଯେ ଅନାଇଁ ଏମାନ
ଫୁଲଶର ଶରେ ଫୁଟୁଥିବ ମୋର ଜୀବର ଜୀବନ । ୧୨ ।

ବଡ଼କର ଲୋକେ ଗ୍ରୀଷମେ ଯେନନ୍ତି କର୍ପୂର ଚନ୍ଦନ
ବଧୂବଦନୀ ଅଙ୍ଗସଙ୍ଗୁ ଲୋଡ଼ା ମୋ ନ ଥାଇ ସେମାନ ।
ବଞ୍ଚାଇବ କଉଁ ପ୍ରକାରେ ବରଞ୍ଚ ଅଇଲେ ଯେ କାଳ
ବିରହ ଅଗ୍ନିରେ ଘୃତ ସମ ଦେଲେ ଜଳଇ ପ୍ରବଳ । ୧୩ ।

ଭାଗିଲା ସବୁ ଭରସା ଏକା ଭୁରୁଶୋଭନୀ ବନ୍ଧୁନେ
ଭୂପତି ନ ଥିଲେ ସମ୍ପତ୍ତି ଯେମନ୍ତ ସୁଖକୁ ନ ଯେନେ ।

୧୦-୪—ନଥିବା ଥିବା କରଥିବା ନକରେ ଦରବ ଅହନ୍ତା (ଖ) ନ ଥିବା ଥିବା କରି ନ
କରେ ଦଇବ ବଥାଭା (ଗ)
୧୧-୧—ମୁଖ କାହିଁ ପାଇବା (କ)
୧୩-୨—ବଧୂ ବଦନୀ ଅଙ୍ଗ ସଙ୍ଗ ଲୋଡ଼ା ମୋ (ଖ)

ଭାବଗ୍ରାହୀ ଭରସାରେ ଭାବେ ମତେ ଭଞ୍ଜିଲ କମଳା
ଭାସିଲି ଅଗାଧ ଜଳଧିରେ ଭେଳା ଲଗାଅ ଅବଳା । ୧୪ ।

ମୋତେ ମେଘ କର ବିଜୁଳୀ ହୋଇ ଯେ ଝଟକେ କୋଳରେ
ମରାଳଗମନୀ ସ୍ୱରୂପେ ବଞ୍ଚିବ ଏ ଘନକାଳରେ ।
ମୟୂର ଡାକରେ ମେଘ ଦମକରେ ପଡ଼ିବ ଚମକ
ମଲି ତ ନାହିଁ ମୋ ପ୍ରାଣବନ୍ଧୁ କେତେ ସହିବ ଆତଙ୍କ । ୧୫ ।

ଜୀବ ଥିବ ନଛ ଶରଦଶଶୀର ହେମନ୍ତ ସଙ୍କ
ଯାବତ ପ୍ରକାରେ ଦୁଖ ଦେଲା ହିମ କନକଗୋରୀଙ୍କ ।
ଜାଣିଲି ସଂସାରେ ନାହିଁ ନାହିଁ ଯାତା ସମାନେ ଦାରୁଣ
ଯାହାକୁ ଦେଖିଲେ ପଶୁ ବଶ ହୋଏ ତାକୁ ଏ କଷଣ । ୧୬ ।

ରତିପତିକ ଷ ବୋଲିବା ଗତି ଯେ ନ କରେ ବିଚ୍ଛେଦେ
ରଖିଛନ୍ତି ସେ ଏବେ ଜୀବନେ ତାହାଙ୍କୁ ସେନେହ ପ୍ରମାଦେ
ରସବତୀ ରସେ ରସିକ ହୋଇ ମୁଁ ରହିଲି କଷ୍ଟେନ୍ତେ
ରହିଲେ ଯେମନ୍ତେ ଜଳରେ ଉତ୍ପଳ ହୃଦୟ ନ ଭିନ୍ନେ । ୧୭ ।

ଲୋକେ ତାହାଙ୍କୁ ଯେ ଲେଖନ୍ତି ଅଗରେ ଉତ୍ତମ ବଗ୍ର
ଲୋଡ଼ା ଏହି କଥା ଲେଖିଛି ବାରତା ପତ୍ରରେ ମୋହୋର

୧୬-୨—ଯାବତ ପ୍ରେମରେ ଦୁଖ ଦେଲ (କ)
୧୬-୩—ଜାଣିଲି ଦଧୀଚି ପଦ୍ୱେ ସଂସାରେ ନାହିଁ ଦାରୁଣ (ଖ)
୧୭-୪—ରହିଛି ଜଳରେ ଉତ୍ପଳ ଯେସନେ ତା ହୃଦୟ ନ ଭିନ୍ନେ (ଗ)
୧୮-୧—ଲେଖନ୍ତି ଅହାରେ (ଗ)
୧୮-୨ ଲୋଡ଼ା ଏହିକଥା ଲେଖିଥିବାକୁ ତା ପତ୍ରରେ ମୋହର (ଖ)

ଲକ୍ଷେ ପ୍ରକାରେ ଅପରାଧ କଲେ ସେ ନୋହଇ ବିମନା
ଲଳିତଲପଟୀ କ୍ଷମା-ଜଳନିଧି ଦୟାରେ ସୁମନା । ୨୮ ।

ବାଳା କୋମଳା ସୁଶୀଳା ଯେ ଲେଶେହେଁନ ଘଡ଼େ ଲୀଳାକୁ
ବଡ଼ ଅଭରଣ କରୁଥିବ ଏବେ ନୀଳକମଳାକୁ
ବାହୁଡ଼ି ଅଉ ଦେଖିବ ନାହିଁ ବିଧୁବଦନୀ ବଦନ
ବିଧାତା ଏହା ସତେ କରିବ ଯିବ ମଦନ କଦନ । ୨୯ ।

ସବୁ ସହଇ ଏ ଦେହ ବସୁମତୀ ପରାୟେ ପ୍ରମାଣ
ଶଶୀମୁଖୀଙ୍କ ଦୁଃଖ ସୁଖ ଦେବାକୁ ମୁଁ ଅଟ କାରଣ
ଶୀର୍ଣ୍ଣ ହୋଇବ ପୂର୍ଣ୍ଣିମୀ ଚନ୍ଦ୍ରକଳା ପରାଏ ଏଣିକି
ଶିବ ଶିବ ଶିବ ରଖ ରଖ ରଖ ମୋ ପ୍ରାଣମଣିକି । ୩୦ ।

ଶକଳ ଚନ୍ଦ୍ରମା ହେଲେ ତୁମ୍ଭ ଶିର ମଣ୍ଡନ ଯେମନ୍ତ
ସକଳ ରୂପେ ସକଳଚନ୍ଦ୍ରମୁଖୀ ମୋହୋର ତେମନ୍ତ
ଶେଷ ନୋହେ ମନୋଭବ ନବଦଶା ଉଦରେ ଥିଲେହେଁ
ଶଙ୍ଖଚକ୍ରପାଣି ରଖିବେ ମୋ ଗୁଣମଣିଙ୍କି ଭଲେହେଁ । ୩୧ ।

ସୁମରି ଏହି ପ୍ରକାରେ ସୁନ୍ଦରୀଙ୍କି ପକାଇ ନିଶ୍ୱାସ
ସଜଳ ନୟନା ହୋଇ ହେଲେ ସେହି କଥାରେ ପ୍ରବେଶ
ସ୍ୱମରୁ ସୁମନ ସୁପୁରୁଷେ ଯଦି ହୁଅଇ ଘାନତା
ସୁମନସ ଶର ସରସ୍ୱତୀ ଧିକ ଧିକ ସେ ବିଧାତା । ୩୨ ।

ଏ ପୋଥିରେ ୨୯ ପଦର ୩ ଓ ୪ ପାଦ ୧ ଓ ୨ ପାଦରୂପେ ଏବଂ ୧ ଓ ୨ ପାଦ ୩ ଓ ୪ ପାଦରୂପେ ପଠିତ ।

ହୃଦରେ ଏହା ବିଚାରି ଉଦ୍ଧବଙ୍କୁ କହିଲେ ସନ୍ଦେଶ
ହଂସଗମନା ଗୋପୀଙ୍କି ତୁମ୍ଭେ ଯାଇ କରାଅ ସନ୍ତୋଷ
ହୋଇ ଅଛନ୍ତି ସେ ମୋ ସଙ୍ଗ ବିହୁନେ ସାରସ ସଦୃଶ
ହରଷ କରାଇ ତାଙ୍କୁ ତୁମ୍ଭେ ଯାଇ ହୋଇବ ଦିବସ । ୩୩ ।

କ୍ଷମାସାଗର ଆଜ୍ଞା ଘେନି ଉଦ୍ଧବ ଗୋକୁଳେ ପ୍ରବେଶ
କ୍ଷପାକରମୁଖୀ ଯିଭମଣ୍ଡଳୀଙ୍କ କହିଲେ ସନ୍ଦେଶ
କ୍ଷୋଭ ଛାଡ଼ି ଗୋପୀ ନ ଛାଡ଼ିଲେ କେତେବେଳେହେଁ ଆଶକୁ
କ୍ଷେମେ ଦୀନକୃଷ୍ଣ ବୋଲେ ବଚନ କ ଦରିଦ୍ର ନାଶକୁ ।୩୪।



୩୩—୪—ହିତସାର ରାଇ ତାଙ୍କୁ ତୁମ୍ଭେ ଏବେହିଁ ଯାଇ ହଂସ [ଗ]

# ଉଦ୍ଧବ ଚଉତିଶା

ବିରହ-ବ୍ୟଥିତ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ବିରହ-ବିଧୁରା ଗୋପିକାମାନଙ୍କ ନିକଟକୁ ଉଦ୍ଧବଙ୍କଦ୍ୱାରା ସନ୍ଦେଶ ପ୍ରେରଣ ଶ୍ରୀକୃଷ୍ଣଙ୍କ ବ୍ରଜାଙ୍ଗନା-ପ୍ରେମ-ପ୍ରସ୍ତରର ଗୋଟିଏ ଅତି କମନୀୟ ଓ କରୁଣ ଅଧ୍ୟାୟ । ଯୋଗପରେ ଉଦ୍ଧବ ଓ ଗୋପିକାଗଣଙ୍କ କଥୋପକଥନ ବ୍ରଜଭାବରସିକମାନଙ୍କର ପରମ ଧନ । ଉତ୍କଳର ବହୁ ଭକ୍ତ କବିମାନେ ନିଜର ବ୍ୟକ୍ତିତ୍ୱର ବିଶେଷତ୍ୱ ବଜାୟ ରଖି ତାହା ଭିନ୍ନ ଭିନ୍ନ ପ୍ରକାରେ ବର୍ଣ୍ଣନ କରିଅଛନ୍ତି । ଏତତ୍ ପ୍ରସଙ୍ଗୀୟ ଉଦ୍ଧବ ଚଉତିଶା ନାମକ ଖଣ୍ଡ କବିତା କେବଳ, ଆମେ ଚାରି ପାଞ୍ଚ ପ୍ରକାରର ପାଇଅଛୁଁ । ଦୀନକୃଷ୍ଣଙ୍କର ଏହି ଉଦ୍ଧବ ଚଉତିଶାକୁ ଛାଡ଼ ଦେଲେ ଅନ୍ୟ ମଧ୍ୟରେ ମୁକୁନ୍ଦ ତ୍ରିପାଠି ପଣ୍ଡିତଙ୍କ ଉଦ୍ଧବ ଚଉତିଶା ତନ୍ମଧ୍ୟରେ ପ୍ରଧାନ । ଦୀନକୃଷ୍ଣଙ୍କ ଏହି କୃତିରେ ପ୍ରେମର ନିତ୍ୟ ସହଚର ଅଭିମାନ ଗୋପିକା ଖେଦୋକ୍ତିରେ ବିଚ୍ଛୁରିତ ହୋଇଅଛିପରି ବୋଧହୁଏ । ବସ୍ତୁତଃ ଲଳିତ ପଦବିନ୍ୟାସ ବଳରେ ମୂର୍ତ୍ତିହୀନ ଭାବକୁ ମୂର୍ତ୍ତିଦାନ କରିବାରେ ଦୀନକୃଷ୍ଣ ଧୁରନ୍ଧର କାରୁଣୀ ।

ରାଗ କଉଶିକ

କହନ୍ତି ଗୋପୀ କୁସୁମଶରେ ତାପୀ ହୋଇ ଉଦ୍ଧବଙ୍କୁ ବଚନ ।
କୃପାସିନ୍ଧୁ ହୋଇକରି ଅମୃତାରେ କି କଲେ କମଳଲୋଚନ ।
ଆହେ ଉଦ୍ଧବ ।
କି କହିବୁଁ ଆଉ ତାହାଙ୍କୁ
କର୍ମ ଅବଳଙ୍କୁ ଶଫଳ ନନ୍ଦନ ବଫଳଙ୍କୁ ନେଲା ଆମ୍ଭଙ୍କ । ୧ ।

ଖୁଆ ଯେସନେ କ୍ଷୀର ମନ୍ଥି ଦହିଁରୁ ସ୍ନିଗ୍ଧ ବାହାର କରଇ ।
ଖାଇ ନ ପାରି ଦାରୁହସ୍ତ ପର୍ଯ୍ୟନ୍ତେ ପରବଶେ ଭ୍ରମି ମରଇ ।
ଆହେ ଉଦ୍ଧବ ।
ଖଳସ୍ୱଭାବ ସେହିମନ୍ତ
ଖାଇବା ପିଇବା ନ ଥିଲା ସର୍ପର ପର୍ଯ୍ୟନ୍ତେ ପରକୁ ନାଶନ୍ତି । ୨ ।

୧-୨—କୃପା ଅମୃତା'ରେ ନ କଲେ (ଗ) ୧-୪—ଶଫଳ୍କୁ ନନ୍ଦନ (କ) ୨ ୧—ସ୍ନିଗ୍ଧକୁ ବାହାର କରଇ (ଖ)

ଗଲା ମର୍କତକଣ୍ଠିମାଳୀ ଅମ୍ବର ଗଣ୍ଠିଅ ହାତରେ ବହିଲା ।
ଗୁଆଁରକୁ ଗୁଣବନ୍ତ ଅଶ୍ରେ କଲା ପ୍ରାପ୍ତେ ସବୁ ଧୃଖ ବୁଡ଼ିଲା ।
ଅହେ ଉଦ୍ଧବ ।
ଗୁହାର କରବୁଁ କାହାକୁ
ଗାଈବାରଣ ବାଡ଼ ଶସ୍ୟ ଭକ୍ଷିଲେ ଅଉ କେ ରକ୍ଷିବ ତାହାକୁ । ୩ ।

ଘେନାଇ ଗଲା ନୃପ କଂସ ଅମର ଗୋପପୁର-ଅବତଂସକୁ ।
ଘଡ଼ିଏ ନୟନେ ଦେଖି ନ ପାରିଲେ ଅନ୍ଧାର ଯେମନ୍ତ ହଂସକୁ ।
ଅହେ ଉଦ୍ଧବ ।
ଘେନିଥିବ ମନେ ସେ କଥା ।
ଘାତ କରଇ ଯେ ଯାହା ସୁଖ ତାହା ସୁଖ ନାଶ ଯାଇ ସର୍ବଥା । ୪ ।

ନୃପତି ହୋଇ ମାତବନ୍ତ ନୋହିଲେ ନିକଟେ ଭେଟଇ କାଳକୁ ।
ନାବ ନ ଥିଲେ ତର ନୋହେ ଯେମନ୍ତ ଅଗାଧ ସମୁଦ୍ର ଜଳକୁ ।
ଅହେ ଉଦ୍ଧବ ।
ନିଷ୍ଠେ ଗୁଣି ମୂଳ ସ୍ୱଭାବ ।
ନବଘନ ଶ୍ୟାମ ନ ଜାଣନ୍ତି କାହା ଭାବେ କି ନ କଲେ ଅଭାବ । ୫ ।

ଙ୍କୃଷ୍ଣବଚନ ଯେ ଯେତେକ କହନ୍ତି ଚନ୍ଦ୍ର ଚନ୍ଦନରୁ ଶୀତଳ ।
ଚିତ୍ତ ସ୍ଥିର କେତେ ବଶ କରିବାକୁ ପାଷାଣ ହୋଇଯିବ ଜଳ ।

୪-୫—ଘାତ କରଇ ଯେ ଯାହାର ପୀରତି ନାଶ ହୋଇ ତାର ସର୍ବଥା (ଗ)

ଅହେ ଉଦ୍ଧବ ।
ଚତୁର ପଣ ମହିମାକୁଁ
ଚନ୍ଦ୍ରଚୂଡ଼ ଅନୁଭବ କରଥିଲେ ଥିଲେ ପର୍ଯ୍ୟନ୍ତ ବ୍ରହ୍ମାଙ୍କୁ । ୬ ।

ଛର ପାମରୀ ଆଭୀରୀ ନାରୀ ଅମ୍ଭେ ବନଚରୀ ସିନା ଦୁର୍ବୁଦ୍ଧି ।
ଛନ୍ଦ ପ୍ରବନ୍ଧ କଥା ଅମ୍ଭଠାରେ ସେ କ୍ଷମା ନ କରବେ ପ୍ରସିଦ୍ଧି ।
ଅହେ ଉଦ୍ଧବ ।
ଛଇଲ ଭ୍ରମର ପୀରତି
ଛଇ ପରାୟେ ଷଣକୁ ଷଣ ଆନ ଜୁଅ କଉଡ଼ି ପ୍ରାୟେ ମତି । ୭ ।

ଯେତେ ରୂପେ ଅମ୍ଭେ ଭଜିଲୁଁ ତାହାଙ୍କୁ ଜଗତେ ଜାଣନ୍ତି ସେ କଥା
ଯେବେ ପ୍ରଭୁ ହୋଇ ଅବେଭାର କଲେ କେ ତାହା କରବ ଅନ୍ୟଥା
ଅହେ ଉଦ୍ଧବ ।
ଯାହା କରଇ ପ୍ରରୂପଣ
ଜାଣିଥିବ ତାହା କେହି ନ କରଇ ମହାଦେବଙ୍କଠାରୁ ଜାଣ । ୮ ।

ଝସକେତୁକୁ ନୟନେ ପୋଡ଼ିଦେଇ ଅଙ୍ଗରେ ବହିଲେ ଯୁବତୀ
ଝୀନବସ୍ତ୍ର ତେଜି ଦିଗମ୍ବର ହେଲେ ମହାଦେବ ସେ ମହାଯତି ।
ଅହେ ଉଦ୍ଧବ ।
ଝାଡ଼ିବାଧୀ ତ ଅମ୍ଭେ ଛାର
ଝର ପାଣି ପ୍ରାୟେ ବେଭାର ଅମ୍ଭର ଯାରନ୍ତେ ହୋଇଲା ଅସାର । ୯ ।

୬-୪—କରିଛନ୍ତି (ଗ) କରିଥିବେ (ଖ)
୯-୪—ଯାତେ ବୃନ୍ଦ ତାଙ୍କ ସେବାରେ ରହିବା ହଣିଲ ଥାନ୍ତି ଅବେଭର (ଖ) ଯାଚିଲେ ହୋଇଲା ଅସାର (କ)

ନନ୍ଦବା ବନ୍ଦବା କଥାକୁ ଯାହାର ନ ଥାଇ ମନରେ ବିଚାର
ନ ଦେନଇ ଯେ ହାନି ଲାଭ ଆମ୍ଭର ଦୂରୁ ତାହାକୁ ନମସ୍କାର
ଅହେ ଉଦ୍ଧବ ।
ନ କଲେ ସେ କଉଁ ନିରାଶ
ନ କରିଥିଲୁ ଆମ୍ଭେ କଉଁ ଭରସା ଏବେହେଁ ନାହିଁ କଉଁ ଆଶ ॥

ଟଳିଲା ନାହିଁ ମନ ତାଙ୍କ ବାହାରେ ଅନଠାରେ ଥାଉ ଆମ୍ଭର ।
ଟେକ ତୃଷାର୍ତ୍ତ ଚାତକ ଯେସନେ ଗ୍ରହ ପାଇଁ ରହିଲା ଜଳଧର ।
ଅହେ ଉଦ୍ଧବ ।
ଟୁଟିଏ ସେ ଦୟା ନ କଲେ
ଟେକରେ ଥୋଇ ଟୋପରେ ପକାଇଲା ପ୍ରାୟେ ଆମ୍ଭଙ୍କୁ ନାଶ କଲେ ॥

ଠାକୁରବର ବୋଲି ବଡ଼ ଭରସା କରିଥିଲୁ ଆମ୍ଭେ ତାହାଙ୍କୁ
ଠକ ବେଭାର ଦେଖିଲା ଦନୁ ସେନା ଚମକ ଉଠୁଅଛି ବୁକୁ ।
ଅହେ ଉଦ୍ଧବ ।
ଠାବ ନ କଲୁ ତାଙ୍କ ଚିତ୍ତ
ଠିକେ ସାତସ୍ୱରୁ ରାଗ ଜନମିଲା ପ୍ରାୟେ ତା ମାୟା ଅପ୍ରମିତ । ୧୨ ॥

୧୧-୨—ଟେକ ତୃଷିତ ଚାତକ ଯେସନେ ଗ୍ରହବାସ (ଖ)
୧୧-୨—ଟେକ ତୃଷିତ ଚାତକ ଆଶା କଥ ରହିଲା ଯେସନେ ଜଳଧର (ଗ)
୧୧-୫—ପ୍ରାୟେକ କରି ନାଶ କଲେ (ଗ)
୧୨-୪—ଠାକୁରବର ହୋଇ ହରି (ଖ) ୧୨-୫—ଠକ ଅବେଭର ଏହୁଠାରେ କଲେ କୁବୁଜା ସଙ୍ଗେ ପ୍ରୀତ କରି (ଘ)

ତକା କରିବା ତରବାରୁ ରଖିବା ପଢ଼ିବା ଗଢ଼ିବା ଭାଙ୍ଗିବା
ତମ୍ ପ୍ରତିପାଳ ପରାଣେ ମାରିବା କଥା ତାରତମ୍ୟ କରିବା ।
ଅହେ ଉଦ୍ଧବ ।
ତୋଲେ ତ ସବୁ ଦେଖୁଅଛ
ତାଙ୍କ କହିବନ୍ତି କପଟ ନ କର କେ ଅଗେ କହୁଁ କଥା ପଛ । ୧୩।

ଥାଟଲ ନୋହିବା କଥା ବଡ଼ ସୁଲଭ ହୋଇ ନୋହିବା ବଡ଼ଦୁଃଖ
ଥମ କହୁ ନାହୁଁ ସମସ୍ତ କଥାକୁ କାରଣ ଥାଙ୍କ ପଦ୍ମମୁଖ ।
ଅହେ ଉଦ୍ଧବ ।
ଥେଉ ଯେସନେ ମୃଗତୃଷ୍ଣାରେ
ଥକୁଅଛ ମନ ହୋଇ ଛନଛନ ଏବେ ଥାହାଙ୍କର ଆଶାରେ । ୧୪ ।

ଅଣେ କର ବଡ଼ଲୋକଙ୍କୁ ଅଦୃଷ୍ଟ ଆଦର ଯେବେ ଦୁଃଖ ପାଇ ।
ଏମନ୍ତ ହେଲେ ଅଗମ୍ୟ ବନସ୍ତରେ ପଶି କାନ୍ଦା ବୁଲୁ ନ ଥାଇ ।
ଅହେ ଉଦ୍ଧବ ।
ଆମ୍ଭର କର୍ମ ଥାନ୍ତା ଯଦି
ଏମନ୍ତ କାନ୍ଦା ହୁଅନ୍ତେ ସତ୍ୟ ସତ୍ୟ କାନ୍ଦା ନୁହନ୍ତେ ସତ୍ୟବାଦୀ । ୧୫।

ତାରିବା ଲୋକ ମାରିବାକୁ ବସିଲେ ତହିଁକି ଅଛି କି ଉପାୟେ
ତଥାପି ତର୍କ ପାରିଲେ ତର ପାର ଆମ୍ଭେ ତ ବନ ପଶୁପ୍ରାୟେ ।
ଅହେ ଉଦ୍ଧବ ।
ସ୍ତ୍ରୀଙ୍କ ମାରଣେ ସେ ଦାରୁଣ
ତୋଟ ତପିବା ତାକୁ ଯୋଡ଼ି ମାରିବା ତାଙ୍କତହୁଁ ହେଲା ତଅଣ ।୧୬।

୧୩-୪—ହେ ମାଧବଙ୍କୁ ହେ ଅଙ୍ଗ (ଗ)

ଥାନ ବିଶେଷେ ସ୍ୱାତି ଜଳ ପରିଷ୍ଟେ ଗୁଣହିଁ କରନ୍ତି ଅପାର ।
ଥିଲା ନାହିଁ ମନେ କୁବୁଜାକୁ ଦେଖ କଲେ ସୁନ୍ଦରୀ-ଅଳଙ୍କାର ।
ଅହେ ଉଦ୍ଧବ ।
ଥାଇ ଯାହାକୁ ଯହିଁ ଯୋଗ
ଥାଣୁ ଶିରକୁ ଚନ୍ଦ୍ରମା ଗଲା ପ୍ରାଏ ତାହା ଇଚ୍ଛାଏ ହୋଏ ଭୋଗ ।୧୭

ଦାହ ସମ୍ମୁଖେ ଅମୃତ ଦେଲା ପ୍ରାଏ ନୁଠୁଅଛୁ ଯହିଁ ସନ୍ତାପ
ଦୁଃଖକର ତାହା କହିଲେ କି ହେବ କରୁଛୁ ଅମ୍ଭେ ମହାପାପ ।
ଅହେ ଉଦ୍ଧବ ।
ଦଇବର ସବୁ ଘଟନା
ଦୀନବନ୍ଧୁ ହୋଇ ଦୁଃଖକାଳେ ପ୍ରଭୁ ଦନେ ନୋହିଲେ ଅସି ସେହ୍ନା ।୧୮।

ଧର୍ମ ପୁରୁଷ ସେ ଅଧର୍ମ କରିବା ନୁହଇ ତାହାଙ୍କ ବେଭାର
ଧାର୍ମିକ ବିବେକ ରସିକବର ସେ ସମସ୍ତ ଗୁଣର ଆଧାର
ଅହେ ଉଦ୍ଧବ ।
ଧଇର୍ଯ୍ୟ-ନିଧିକି କହିବ
ଧ୍ରୁବ ବଚନ ଯେ ଅଧ୍ରୁବ ହେଉଛି ଧରଣୀ କେମନ୍ତେ ରହିବ ।୧୯।

ନୟନ ମନ ନ ଛାଡ଼ିଲା ତାହାଙ୍କୁ ଏହି କଥା ହେଲା ପ୍ରମାଦ
ନ ଗଲା ଅନାଥ କଲେହେଁ କେବେହେଁ ଶ୍ରୀଗୋପୀନାଥ ଅପବାଦ
ଅହେ ଉଦ୍ଧବ ।
ନିଅଇ ମଧୁ ପୁଷ୍ପକର
ନିଷ୍ଫଳ ଭାଗ୍ୟବଶରୁଁ ଉଡ଼ି ଦେଖ ନାମ ବୋଲାଇ ମଧୁକର ।୨୦।

ପରମ ଆନନ୍ଦ ହୋଇଲେ ଅମୃତ ପରମାନନ୍ଦ ନାମ ବହି
ପ୍ରୀତିଠାରେ ନନ୍ଦ ଅବେଗ୍ୟର କଲେ ପ୍ରଭୁମାନଙ୍କ ସଙ୍ଗ ଏହି ।

ଅହେ ଉଦ୍ଧବ ।

ପଶୁରବନ୍ଧ ବାରେ ଯାଇଁ

ପରମ ଅମୃତ କୁଣ୍ଡେ ବୁଡ଼ିମଲେ ମରିବାର ସେ କି ନୁହଇ । ୨୧ ।

ପଙ୍କଜାରବିନ୍ଦ-ବଦନ ଫେଡ଼ି କରି କହିଗଲେ ଯାହା ଶ୍ରୀମୁଖେ
ଫନା କରି ସେହି କଥାମାନ ଗୋପୀ ଜନ ବଞ୍ଚନ୍ତି ନାନା ଦୁଖେ

ଅହେ ଉଦ୍ଧବ ।

ଫୁଲଶର ନେଲା ଫରୁଣା

ଫୁଲ ତୁମ୍ଭି ଗଲା ଭ୍ରମର ପଣ୍ଡ୍ରେ କେବେହେଁ ନ କଲେ କରୁଣା ॥

ବୋଲନ୍ତି ଏ ବଡ଼ ବଡ଼ମାନଙ୍କର ବଡ ବିଗ୍ରହ ବଡ ବୁଦ୍ଧି
ବୋଇଲା ବଚନ ବିଅର୍ଥ ନ କର ବିଶେଷେ କରନ୍ତି ପ୍ରସିଦ୍ଧି ।

ଅହେ ଉଦ୍ଧବ ।

ବେଳେହେଁ ତାହା ନ ରଖିଲେ

ବଶ ହୋଇ କୁବୁଜାଙ୍କ ପ୍ରେମରସେ ଏହି କଥା ନାହିଁ ଶିଖିଲେ ।୨୩।

୨୧-୨—ପ୍ରୀତିଠାରେ ଦେଖ (ଖ) ଅବେଗର କର (ଙ) ୨୧—ପ୍ରୀତିଠାରେ ନେତ୍ରେ (ଖ) ଅବେଗର (ଙ) ୨୧-୩—ଥରେ ଯାଇଁ (ଖ)
୨୨-୧—ପୁଷ୍କାର ବଦ ନୟନ (ଙ) ୨୨-୨—ପନକର (ଘ) କେହିକଥା ଚେ ଘି (ଙ)
୨୨-୪—ଫୁଲ ତୁମ୍ଭି ଭ୍ରମର ପାଦ୍ରେ ଅତ ବେ ବେଳ ତାହାକୁ କରୁଣ (ଙ)
୨୩-୧—ବୋଲନ୍ତି ଯେ ବଡବଡଙ୍କର ବଡ ବଡ ଚ (ଘ) ୨୩-୨—ବେଳେ ବେ କରନ୍ତି ପ୍ରସିଦ୍ଧି (ଙ) ୨୩-୪—କୁବୁଜାର ପ୍ରେମରସେ (ଙ)

ଭାବଗ୍ରାହୀ ଭାବ ଗ୍ରହଣ କରିବା ଭ୍ରମର କୁସୁମ ଚୁମ୍ବିବା
ଭଲ ମନ୍ଦ ପାନେ ବିଗୁରନ୍ତି ନାହିଁ ଭାଗ୍ୟ କି ନ କରଇ ଅବା ।

ଆହେ ଉଦ୍ଧବ ।

ଭାବେ ଯେ ଅଭାବ କରିବା
ଭଲ ନୁହଇ ସେ ଭଲି ଲୋକଙ୍କର ଭ୍ରମର ସ୍ୱଭାବ ଧରିବା । ୧୪ ।

ମହତ ଲୋକଙ୍କୁ ଆଶ୍ରେ କରିବାର ପୋତ ବାଣିଜ୍ୟ ପ୍ରାୟେ ଜାଣି
ମହା ସାହସ ମହା ଅଣି ସକାଶୁଁ ମୁହୂର୍ତ୍ତିକେ ଯାଇ ପରାଣ ।

ଆହେ ଉଦ୍ଧବ ।

ମହତହୀନ ଲୋକେ ପ୍ରୀତି
ମହାନଦୀ ପ୍ରାୟେ ବଢିବା ଅଧିକା ସେହି କି ନୋହଇ ଅନୀତି ।୧୫।

ଯେମନ୍ତେ ପୂର୍ବେ କପିଲ କୋପାନଳେ ଦହିଲେ ସଗର-ତନୟେ
ଜଳୁଛୁ ଜଗତେ ସେହି ପରକାରେ କାମ ଅନଳେ ଆମ୍ଭ କାୟେ ।

ଆହେ ଉଦ୍ଧବ ।

ଯଉଁ ପ୍ରତିକାର ତହିଁକି
ଜଗତ ଅଧୀନ ଆମ୍ଭ ପ୍ରାଣଧନ ଦେବ କୃଷ୍ଣ-ଭଗୀରଥିଙ୍କି । ୧୬ ।

୧୪-୨—ଭଲମନ୍ଦ ଆଉ (ଖ) ୧୪-୩—ଭାବରେ ଅଭାବ (ଗ) ୧୪-୪—ଭ୍ରମର ସ୍ୱରୂପ ଧରିବା (ଖ)

୧୫-୨—ମୁହୂର୍ତ୍ତେ ଘେନଇ ପରାଣ (କ) ୧୫-୪—ସହଜ ତ ନୋହେ ଅନୀତ (ଗ)

୧୬-୧—ହୋଇଲେ ସଗର (ଖ) ୧୬-୨—ଜଳୁଛି ସେହ ପ୍ରକାରେ ଜଗନ୍ତରେ (ଚ) ୧୬-୩—ପ୍ରତୀକାର ଏତେକ (ଖ)

ରହୁଥିବ କୀର୍ତ୍ତି ଖେତ୍ତଲେ ପ୍ରୀତି ବିରହ ହୋଇ ଗୋପୀ ମଲେ
ରାଜୀବଲୋଚନ ଘନଶ୍ୟାମ କାମ-ହାତରେ ତାଙ୍କୁ ଅର୍ପି ଦେଲେ ।
ଅହେ ଉଦ୍ଧବ ।
ରତିର ପ୍ରତିଫଳ ଏହି
ରାଜ୍ୟ ବିଷୟ ରସେ ତାଙ୍କ ରସରେ କାମ-ଅନଳେ ହେଲୁଁ ଦହି । ୧୭।
ଲୋକ ମଧ୍ୟରେ ଦେଖିଲା ନାହିଁ ନେତ୍ର ଶ୍ରବଣମଣ୍ଡନ ପ୍ରୀତିକି
ଲେଶେ ଅଙ୍ଗରୁ ଅନ୍ତର ନ କରନ୍ତି ସ୍ନେହ ଭାବରୁ ପାର୍ବତୀଙ୍କି
ଅହେ ଉଦ୍ଧବ ।
ଲଲାଟେ ଲେଖନ ପ୍ରମାଣ
ଲୋଭ କରି ରତ୍ନାକରେ ବୁଡ଼ିଗଲେ ରତ୍ନ କି ଲଭୁଥାଇଁ ପୁଣ । ୧୮ ।
ବାଇ ପ୍ରାପ୍ତେ ହୋଇ ବଦ୍ଧୁତ କହିଲେ ତହିଁରୁ କି ହେବ କାରଣ
ବଡ ବଡ଼ଙ୍କୁ ବୋଧ କରି ନୁହଇ ବିବେକ ନ ଥିଲେ ପ୍ରମାଣ ।
ଅହେ ଉଦ୍ଧବ ।
ବିବେକବର ହୋଇ ହରି
ବଡ଼ ଅବେଭାର ଏହିଠାରେ କଲେ କୁବୁଜା ସଙ୍ଗେ ପ୍ରୀତି କରି । ୧୯ ।

୧୭-୧—ରହୁଥାଉ କୀର୍ତ୍ତି···ବିଚ୍ଛେଦ ହୋଇ (ଗ) ୧୭-୨—ଘନ ଶ୍ୟାମ କାମ ହାତରେ (କ) ୧୭-୪—ରସିକ ଭ୍ରମର ରସାନ୍ତର ହେଲେ ରସନ୍ତି ନାହିଁ ସ୍ନେହ ବହି (କ)

୧୮-୧—ଦେଖିବା ନାହିଁ ନେତ୍ର (ଗ) ୧୮-୨—ଅଙ୍ଗରୁ ବାହାର·····ସ୍ନେହବଶରେ ପାର୍ବତୀଙ୍କି (ଗ) ୧୮-୪—ରତ୍ନାକରରେ ବୁଡ଼ିଲେ ରତ୍ନ କି ଲଭୁଥାଇ ଜାଣ (ଗ)

୧୯-୧—ବଦ୍ଧୁତ କହିବା ଏଥିଁ ଅବା କେଉଁ କାରଣ (ଗ) ୧୯-୨—ବଡ଼ଙ୍କୁରେ ବୋଧ କର ନୋହେ (ଗ) ୧୯-୩—ହୋଇ କରି (ଘ)

ସବୁହିଁ ସୁନ୍ଦର ପ୍ରରୂପଣ ଥିଲେ ଜଗତେ ଯେତେ ଅସୁନ୍ଦର
ସର୍ପ ଶଯ୍ୟନ ହସ୍ତ ହର ଉଲଗ୍ନ ହେଲେ କଷ୍ଟ ନାହିଁ ବସ୍ତ୍ରର ।
ଅହେ ଉଦ୍ଧବ ।
ଶୁକଳେ କଳା ଥିଲା ପ୍ରାୟେ
ସାନ ହୋଇ ବଡ଼ ଲୋକେ ଅବେଭାର ଦଶେ ବନ୍ଧୁତ ଦୂରଯାଏ ॥

ସେମାନ କହିବାରୁ ମାନହାନ ସେ କଉଁ ଲାଭ ତହିଁ ଆମ୍ଭର
ସହଜେ ଅରଦ୍ର ବାଣିଜ ଲୋକର ବୋହିତ ଚଳ୍ପା ଅବେଭାର ।
ଅହେ ଉଦ୍ଧବ ।
ସବୁରୂପେ ଆମ୍ଭେ ଅସାର
ସୁତ ପତି ଛାଡ଼ି ଶରଣ ପଶିବା ଦୋଷ ନ ଧରିବେ ଶ୍ରୀଧର । ୩୧ ।

ଶେଷର ହୁଡେ ଦଣ୍ଡବତ ଆମ୍ଭର କହିବ ସେ ପ୍ରୀତିହଚଙ୍କୁ
ସଙ୍ଗୁଳିଲେ ବୋଲି କହିବ ଆମ୍ଭର କୁବୁଜା-ନାଗରୀବରଙ୍କୁ ।
ଅହେ ଉଦ୍ଧବ ।
ସେ ସିନା କରୁଛନ୍ତି ପର
ସହସ୍ରେ ଅଂଶରୁ ଅଂଶେ ତ ଆମ୍ଭର ତାଙ୍କଠାରେ ନାହିଁ ଅନ୍ତର । ୩୨ ।

୦-୩—ସବୁରୂପେ ଅମ୍ଭେ ଅସାର (ଗ) ୩୦-୪—ସହଜେ ହଦ୍ର ବାଣିଜ୍ୟ ଲୋକର ବୋହିତ ଚଳ୍ପା ଅବେହାର (ଗ)
୩୧-୧—କହିବାର ମାନହାନ···ଏଥି ଅମ୍ଭର (ଗ) ୩୧-୩—ଶୁକଳେ କଳା ଥିଲା ପ୍ରାଏ (କ) ୩୧-୪—ସାନ ହେଲେ ଲୋକ ବଡ଼ ଅବେହାର ଦଶେ ବନ୍ଧୁତ ଦୂର ଯାଏ (ଖ)
୩୨-୧—ଶେଷର ହୁଡ଼ (ଖ) ୩୨-୨—ସଙ୍ଗଛଳ ବୋଲ (କ), କୁବୁଜା ନାଗରବରଙ୍କ (କ) ୩୨-୩—ସେ ଥାନ କରୁଛନ୍ତି (ଖ)

ହାତ ଧରି ଅମ୍ଭେ କହୁଛୁ ତୁମ୍ଭଙ୍କୁ ଏତେକ କହିବ ତାହାଙ୍କୁ
ହତ ଆଦର କଲ ପ୍ରାୟେ ଅମ୍ଭଙ୍କୁ ଆଉ ନ କରବେ କାହାକୁ ।

ଅହେ ଉଦ୍ଧବ ।

ହସ କଉତୁକ ବେଳରେ ।

ହରଷ ହୋଇ ଜଣାଇବ କରୁଣା ଥିଲେ ହୃଦୟ-କମଳରେ । ୩୭ ।

କ୍ଷୁଧା ନ ଥିଲେ ଅମୃତ ନ ରୁଚଇ କ୍ଷୁଧାରେ ସମସ୍ତ ମଧୁର
କ୍ଷମାସାଗର ନାଗରବର କ୍ଷୁଧା ହୋଇ ସେ ଅଛନ୍ତି ଆମ୍ଭର ।

ଅହେ ଉଦ୍ଧବ ।

କ୍ଷମେ ଯାଇ ବେଗେ ଜଣାଅ

କ୍ଷୀଣମତି ଦୀନକୃଷ୍ଣ ବୋଲେ କ୍ଷୋଭ ଛଡ଼ାଇବା କଥା ଶୁଣାଅ । ୩୮ ।

୩୭-୧—ହସ୍ତଧରି ଏବେ—ଏବେହେଁ କହୁଛୁ ତାହାଙ୍କ (ଗ) ୩୭-୨—ଅନ୍ନ ହତ ପ୍ରାୟେ (ଖ) ୩୭-୪—ହସକୌତୁକ ବେଳରେ (କ)

୩୮-୧—ଅମୃତହିଁ ନ ରୁଚେ (ଖ) ୩୮-୨—କ୍ଷମାସାଗର ସୁଧାକର ଅଦର ହୋଇ ସେ ଅଛନ୍ତି (ଖ) ୩୮-୪—କଥା ଜଣାଅ (କ)



# ଗୋପୀସନ୍ଦେଶ ଚଉତିଶା

ଉପମାମୟ ଦୃଷ୍ଟାନ୍ତମାଳା ଦ୍ୱାରା ଏ ଚଉତିଶାରେ ଶ୍ରୀକୃଷ୍ଣ ଗୋପିକା ମାନଙ୍କ ଦୃଷ୍ଟାନ୍ତମାନର ଅଭିବ୍ୟକ୍ତିରୁ ବର୍ଣ୍ଣନା କରିଅଛନ୍ତି । ପାଠ କଲା ମାତ୍ରେ ପାଠକର ମନ ଶ୍ରୀକୃଷ୍ଣଙ୍କ ବ୍ରଜବିରହ-ବିଧୁର ଭକ୍ତଙ୍କର ହୃଦୟମୟ ଭାବ-ପ୍ରବାହରେ ଭେଳି ଆସେ ବୋଲି ପରି ବୋଧ ହୁଏ । କବି ଶବ୍ଦ କ ଭାଷା ସବୁ ପରିତ୍ୟାଗ ଗୋପୀ ସନ୍ଦେଶ ଚଉତିଶାକୁ ଗୋଟିଏ ରତ୍ନ ।

### ଦଶ—ପରଜ ରାଗେ

କହନ୍ତି ସକଳ କଳାକର-ମୁଖୀ
ଗୋପୀମାନେ ଉଦ୍ଧବଙ୍କୁ
କହିବଟି ତୁମ୍ଭ କରିତବ କୃପା—
ପିଉ ନାମ ମାଧବଙ୍କୁ । ୧ ।

ଖଳ କଂସ ବୋଲେ ମଥୁରା ଯାଇ ସେ
ଆସିବାକୁ ବୋଲି ଥିଲେ
ଖମଣ୍ଡଳୁ ଖସି— ପଡ଼ିଲା ଝଟର
ନଦୀ ପରିଏ ତ ହେଲେ । ୨ ।

ଗୋବର୍ଦ୍ଧନ ଧରା— ଧର-ଧରଙ୍କୁ ତ
କହିବଟି ଏ ପ୍ରସଙ୍ଗ

୩-୧-—ଗୋବର୍ଦ୍ଧନ ଧରାଧରଙ୍କ ଗୁହରେ (ବ)

ଗରୁ ଯତ୍ନବନ ଗଡ଼ାଲ୍ଲ ପ୍ରାୟେ ତ
ପୁରୁଷଙ୍କ ପ୍ରୀତି ରଙ୍ଗ । ୩ ।

ଯେନ କହୁଥାନ୍ତି ନୂଆ ନୂଆ ଯାକ
କୃପଣଙ୍କୁ ଲୋଭି ପ୍ରାୟେ
ଘୃଣାକ୍ଷରେ ପ୍ରେମ— ରସକୁ ପାଇଲେ
କରନ୍ତି ଅନ ଉପାୟେ । ୪ ।

ନାଗରୀମାନଙ୍କ କଟାକ୍ଷକୁ ଲକ୍ଷ
ନାଗରମାନଙ୍କ ବୋଲ
ନାଶ କର ଧୈର୍ଯ୍ୟ ଦୁଃଖ ନ ଘେନନ୍ତି
ଦହନ୍ତି ଅନଙ୍ଗ ହାଲ । ୫ ।

ଗୃହଁ ଗୃହଁ ନାଶ କୁହୁଡ଼ି ପରାୟେ
ଚତ୍ତ୍ୱ ଧନ ଚୋର କଲେ
ଚତୁର୍ବର୍ଗଦାତା ହୋଇ ତ ଆମ୍ଭଙ୍କୁ
ଚିନ୍ତା ଦାନ ଦେଇ ଗଲେ । ୬ ।

ଛଇଲ ପୀରତି ଭ୍ରମରଙ୍କ ରୀତି
ଭୋଗ ହେବାଯାଏ ଥାଇଁ
ଛାଇ ପରାୟେ କ୍ଷଣକେ ଅନ ହୋଏ
ଅତ୍ର ଲୋଡ଼ିଲେ ନ ପାଇ । ୭ ।

୩-୩—ଜଦ୍ଭିଲ ପଦାପ୍ରେ (ଗ) ୪-୩—ଲଢଠାନକୁ (ଖ)
୫-୩—ମୁଢ ଧର୍ଯ୍ୟ ହରନ୍ତି (ଖ)
୬-୨—ହଦେନେନେ (ଟ) ୬-୩—ଦାଧା (ଖ) ୬-୪—ଚନ୍ତାମାନ (ଖ)
୭-୧—ଛଇଲଙ୍କ ପ୍ରୀତ (ଙ) ୭-୩—ହେଲେ (ଖ)

ଯାହା କହୁଥାନ୍ତି ଯୁବା ଯୁବତୀଙ୍କି
ରତି ପଦ୍ମ ଲକ୍ଷ୍ୟ ଦେଇ
ଯଉବନ କାଳ୍ପ ଅନ୍ତର ହୋଇଲେ
କେ କାହାକୁ ପଚାରଇ । ୮ ।

ଝିମିଟେ ଆମ୍ଭ ଦୁଖ ଦେଖି ନ ଥିଲେ
ନେତ୍ର କପାଳ ପରିଯେ
ଝଂସକେତୁ ଶରେ ଦହି ହେଲୁ ଏବେ
ଦୟା ନ ବସିଲା ଦେହେ । ୯ ।

ନଦୀତଟ ଅଣେ କଲା ତରୁ ଯେହ୍ନେ
ଅଲପକେ ନାଶ ଯାଇ
ନାଳକ୍ଷ ଗୋପୀ ସେହମନ୍ତ ହୋଇଲୁ
ନନ୍ଦନନ୍ଦନ କୁ ପାଇ । ୧୦ ।

ଟେକ ମାତ୍ର ଅଛୁ ଗୋପୀନାଥ ବୋଲି
ଚନ୍ଦ୍ର କଇରବ ପ୍ରାୟେ
ଟକାଏ ଅନ୍ତର ହୋଇଲେ ଏକା ସେ
କୁବୁଜାକୁ ଭୋଗ ହୋଯେ । ୧୧ ।

ଠାଠିକ ଜଣ ଜଣକେ କହୁଥାନ୍ତି
ଭ୍ରମର ସିନା ଏ କାଯେ

୮-୪ —ହ୍ନ କରଇ (କ)
୯-୨—ନେତ୍ରୟୁଗଳ (ଗ) ୯-୩—ଦନ (କ) ଅଙ୍ଗେ (ଖ) ୧୦-୩—ଝାରଣ (ଗ)
ଚେଖିକ ହେଲୁ ଅଙ୍ଗେ (ଖ)
୧୨-୧—କ୍ଷଣେ କ୍ଷଣେ କହନ୍ତି (ଗ)

ଠାବକଲୁ ସବୁ ପ୍ରକାରେ ସନ୍ଦେଶ
ମାଳୀ ଜଳଘଠ ପ୍ରାୟେ । ୧୨ ।

ତମ୍ଭ ପ୍ରତିପାଳ କାହିଁରେ ନୋହିଲୁ
କାକ ପ୍ରାୟେ ଶ୍ରମ ହେଲା
ଡାଳେ ବସିଲା ରବିଲା ଶୁଆ ପ୍ରାୟେ
ସେ ବଚନ କାହିଁ ଗଲା । ୧୩ ।

ଛମ କହି କହି ସବୁ ନାଶ କଲେ
ଏବେହେଁ ସେହି ପ୍ରସଙ୍ଗ
ତାଲେ ଜାଣିଲୁ ଛମେଁଅ ମାନଙ୍କର
ବୋଲ ସମୁଦ୍ର ତରଙ୍ଗ । ୧୪ ।

ଇନ୍ଦ୍ରଜାଲକ ପ୍ରାୟେ କେତେ ପ୍ରକାରେ
କେତେ କଥା ଦେଖାଇଲେ
ଆନ କଥ ସବୁ ପ୍ରକାରେ ସେ ମାୟା
ମନରେ ତ ରଖାଇଲେ । ୧୫ ।

ତଇଲ ବିନ୍ଦୁ ପାଣିରେ ପଡ଼ି ଯେସନେ
ବେଗେ ବିସ୍ତାର ଭଜଇ
ଯାହାଙ୍କ ପହିଲ ପ୍ରୀତି ସେହିମତ
ପଛକୁ ଶୁଖିଲା ନଇ । ୧୬ ।

୧୩-୩ – ପଧିର ଶୁଆ (ଖ) ।
୧୪-୧—ପର୍ଵ (ଖ),ଚଉ କାହିଁ ଖ)

ଅଳକୁ ବନ୍ଧୁ ବାସନା ଫଳ ପ୍ରାପ୍ୟେ
ତାଙ୍କ ଶ୍ରୀଅଙ୍ଗ ଛୁଇଁଲୁ
ଥୋକାପ୍ୟେ କାଳ ଭୋଗ ହୋଇ ଉଲ୍ଲଘି
ମାଳ ପର୍ଯ୍ୟେ ହୋଇଲୁ । ୧୭ ।

ଦଇବେ ପୁରୁଷଙ୍କ ପ୍ରୀତ ଭ୍ରମର
ପ୍ରାପ୍ୟେ ପଛକୁ ପ୍ରମାଦ
ଦଶ ଚଉଦ ଲୋକରେ ଲୋକ ହେବ
ବୋଲିବ ତାଙ୍କ ପ୍ରମାଦ । ୧୮ ।

ଧର୍ମ-ଧରକୁ ଅଗସ୍ତି ଭଣ୍ଡି ଯାଇ
ଦକ୍ଷିଣେ ରହିଲା ପ୍ରାପ୍ୟେ
ଧରଣୀଧର ହେହମନ୍ତ ଅମ୍ଭଙ୍କୁ
କରିଣ ଗଲେ ଥୋକାପ୍ୟେ । ୧୯ ।

ନୂଆ ନୂଆ ଯାକ ନମ୍ରତା ହୋଥନ୍ତି
ଗୁଣ ଦେଲା ଧନୁ ପ୍ରାପ୍ୟେ
ନନ୍ଦନ ସମ୍ପତ୍ତି ଭୋଗକୁ ପାଇଲେ
ନନ୍ଦନହିଁ ଥିନ ହୋଏ । ୨୦ ।

ପୂରୁଥାଇ ପୁର ପାଦପଦ୍ମ ତଳେ
ଯେହ୍ନେ ବୈଷ୍ଣବଙ୍କ କାପ୍ୟେ

୧୯-୨ – ନିର୍ଦେଶ ନାହିଁ (୯) ।
୨୦—ନୂତନତା ନବ ବନିତା ପାଇଲେ ଯାହା ମଧୁର ନଗନ୍ଦ । ନନ୍ଦନ ମନରେ ପୂରିତନ
ପ୍ରୀତି ଅନ୍ୟମାନେ ଗ୍ରାହ୍ୟ ନାହିଁ । ( ୯ )

ପକାଇ ଦେଇ ପାଖକୁ    ଅନ୍ୟେ ଥାଉ
ଖେଳନ୍ତା ସାରଣୀ ପ୍ରାୟେ । ୨୧ ।

ଫାଟି ନ ଗଲା ହୃଦୟ    ପୁଣି ବହୁ
କହିବାକୁ ଏଡ଼ା କଲା
ଫଳଯାଇ ଯେବେ    କୃଷିକ ପରାୟେ
ଶ୍ରମ ମାତ୍ରକ ରହିଲା । ୨୨ ।

ବନ୍ଧୁତ ସଙ୍କଟୁ    ରତ୍ନାକର ଶୋକ—
ସମୁଦ୍ରେ ମେଲିଲେ ଯହୁଁ
ବାରଣ ସ୍ନାନ କଲା    ପ୍ରାୟେ କଣ୍ଠହିଁ
କାରଣ ନୋହିଲା ତହୁଁ । ୨୩ ।

ଭୋଜନ ବିନୁ ଭୋଖୀ    ମନ ଯେମନ୍ତ
ପ୍ରବେଶେ ନୋହିଲ ତୋଷ
ଭାବଗ୍ରାହୀ ଭକ୍ତି    ଗଜାଦନ୍ତ ସରୁ
ଭାବଯାକ ଦେଲା ବିଷ । ୨୪ ।

ମହାପ୍ରଭୁଙ୍କ ଶ୍ରୀମୁଖୁ    ଯା ଶୁଣିଛୁ
ବେଗେ କହ ଆମ୍ଭ ପାଶ
ସନ୍ଦେଶ ଅଙ୍ଗ ଗରଳ    ଜ୍ୱାଳା ଦିଏ—
ଝଳିଜାଳେ ହୋଏ ନାଶ । ୨୫ ।

ଜୀବ ଥାଉଁ କାମ    ଅନଳେ ଜଳୁଛୁଁ
ସଗର ପୁଅଙ୍କ ପ୍ରାୟେ
ଜଗମୋହନ କୃଷ୍ଣ—    ଯାଙ୍କ ବାହାରେ
ନାହିଁ ଶୀତଳ ଉପାୟେ । ୨୬ ।

ରାଜୀବ ଲୋଚନ ଶ୍ରୀମୁଖ ଚନ୍ଦ୍ରମା
ଦେଖିବା ଭରସା ଥିଲା
ରଙ୍କ ରଜା ହେବା କାମନା ପରାୟେ
ବଚନରେ ଭୋଗ ହେଲା । ୧୭ ।

ଲାବଣ୍ୟନାଥ ତନୁ ମନ ଉତ୍ତୁଙ୍ଗ
ବାତଚକ୍ର ପ୍ରାୟେ ହୋଇ
ଲୋକଲାଜକୁ ଦେହ ମାତ୍ର ଧରନ୍ତି
ଅଦେହ-ଦଣ୍ଡକୁ ସହି । ୧୮ ।

ବରଜ ନାରୀଙ୍କ ବିକଳ ଦେଖିଣ
ଉଦ୍ଧବ ପ୍ରବୋଧ କରି
ବୋଇଲେ ତୁମ୍ଭ ତାହାଙ୍କ ପ୍ରୀତ-ନୀର
ଛୀରରୁ ଅଭେଦ ପରି । ୧୯ ।

ସେହିତ ତୁମ୍ଭଙ୍କ ହୃଦେ ସେବନ୍ତି
ତୁମ୍ଭର ସ୍ନେହ ସଦୃଶ
ସଲିଳ କାଚ— ଘଟରେ ଥିଲା ପ୍ରାୟେ
ହୋଇ ସେ ଅଛି ପ୍ରକାଶ । ୨୦ ।

ଶୂନ୍ୟ ଦ୍ରବ୍ୟ ସେ ସର୍ବଠାରେ ସମାନ
ବନଫୁଲ ବାସ ପ୍ରାୟେ
ସେହିରୂପେ ଖୋଜି ସେ ସେବନ ପାରଇ
ତାହାର ସେବା ସେ ହୋଏ । ୨୧ ।

୧୮-୪—ଦୂଷଣ (ଢ)
୧୯-୪—ଛୀରରୁ (ଖ) ଅଭେଦ (ଖ)
୨୦-୧—ନିବୃତ୍ତ (ଖ) ୨୦-୨—ନିତ୍ତଙ୍କର ଅଠର (ଖ) । ୨୧-୨—ନିଶ୍ଚିନ୍ତ ଫୁଲ
(ଢ) ୨୧-୩—ରକ୍ଷୁରପେ (ଖ) ୨୧-୩—ଚିହ୍ନେ [ଗ] ।

ଶାଖୀ ଶୁକ ପକ୍ଷୀ    କାହାର ନୋହନ୍ତି
ଯେ ଯେନ ପାଳେ ତାହାର
ଶ୍ୟାମସୁନ୍ଦର    ତେଣୁ ସେହ୍ନମତ
ହୃଦରେ ଭାବନା କର । ୩୨ ।

ହଠକର ହଠ    ହାଠଙ୍କ ପ୍ରାପ୍ତେ ଯେ
ହାଥରେ ଥିଲେ ନ ଥାଇ
ହୃଦେ ଭାବୁଥାଅ    ଜଗତ ବନ୍ଧୁ ସେ
ଭାବିଲେ ତାହାଙ୍କୁ ପାଇ । ୩୩ ।

କ୍ଷୋଭ ଛଡ଼ାଇ    ଗୋପୀଙ୍କି ବୋଧ କରି
ଉଦ୍ଧବ ମଥୁରା ଗଲେ
ଯେମେ ଦୀନକୃଷ୍ଣ    ବୋଲେ ସମ୍ବାଦ
ପ୍ରାପ୍ତେ କୃଷ୍ଣଙ୍କୁ କହିଲେ । ୩୪ ।



# ବଉଳ ଚଉତିଶା

ଅଭିଜ୍ଞାନଶକୁନ୍ତଳରୁ କୋକିଳପକ୍ଷୀଦ୍ୱାରା ବିରହିଣୀମାନଙ୍କ ସନ୍ଦେଶ ପ୍ରେରଣ କୌଶଳରେ ଓଡ଼ିଶାର ଅପୂର୍ବ କୋଇଲି ସାହିତ୍ୟର ସୃଷ୍ଟି । ମଧ୍ୟ ସହଚର 'ବଉଳ' ଶ୍ରୀ ରାଧାଶ୍ରୀକୃଷ୍ଣଙ୍କ ପ୍ରୀତି-ଲୀଳାର ସହଚର ଓ ପ୍ରେମ-ବିନୋଦର ସାକ୍ଷୀ । ତେଣୁ ତାକୁ ସମ୍ବୋଧନ କରି କୋଇଲି ପରି ତା ଆଗେ ବିରହ ବଧୂର ହୃଦୟର ଭାବ ଜ୍ଞାପନ ବିରହିଣୀ ଶ୍ରୀରାଧାଙ୍କ ପକ୍ଷରେ ସ୍ୱାଭାବିକ । ଅନେ ଦୀନକୃଷ୍ଣଙ୍କ ଛଡ଼ା ଅନ୍ୟ ଜଣେ କବିଙ୍କର ବଉଳ ଚଉତିଶା ମଧ୍ୟ ପ୍ରାପ୍ତ ହୋଇଅଛି । ବଙ୍ଗାନୁକରଣ ପ୍ରଭାବରେ ଓଡ଼ିଆ ସାହିତ୍ୟରୁ ପ୍ରଚଳନ ବଳ ରଚିଣୀ କ୍ରମଶଃ ଲୋପ ପାଇ ଯାଉଅଛି । ବଉଳ ଚଉତିଶାର ଛନ୍ଦ ଅଧୁନାତନ ଓଡ଼ିଆଙ୍କୁ ଏକାବେଳେ ନୂଆ ପରି ବୋଧ ହେବ । ଏହାର ଏକମାତ୍ର କାରଣ ପ୍ରାଚୀନ ସାହିତ୍ୟାନୁଶୀଳନର ଶୋଚନୀୟ ଅଭାବ ।

କନ୍ଦନ୍ତି ରାଧିକା ଦେଖି ରସାଳ ବକୁଳ
କଂସପୁରେ ରହିଲେ ଗୋ ବଉଳ ! କୃଷ୍ଣ କାମପାଳ ଗୋ ବଉଳ !
କହିଥିଲେ ଯେତେ ଯେତେ କଥା ତୁମ୍ଭମୂଳେ
କେମନ୍ତେ ତା ପାସୋରିଲେ ଗୋ ବଉଳ ! ପଡ଼ି କାହାମେଳେ ଗୋ
ବଉଳ ! । ୧ ।

ଖଣେ ନ ଛାଡ଼ନ୍ତି ତୁମ୍ଭ ବିକାଶ କାଳରେ
ଖଣ୍ଡିଗଲେ ତେଡ଼େ ସୁଖ ଗୋ ବଉଳ ! ଏବେ ସେ କାଳରେ ଗୋ ବଉଳ
ଖୋସିଥିଲେ ତୁମ୍ଭଙ୍କୁ ସେ ଶିରେ ଚୋରା କରି
ଖରେ କାମେ ବଶହେଉ ଗୋ ବଉଳ ! ଦେଖି ଗୋପନାରୀ ଗୋ
ବଉଳ ! । ୨ ।

ଗଣ୍ଡରେ ଝଟକୁ ଥାଇ ମକର କୁଣ୍ଡଳ
ଗଞ୍ଜଇ ପୂର୍ଣ୍ଣିମୀ ଚନ୍ଦ୍ର ଗୋ ବଉଳ ! ଶ୍ରୀମୁଖ ମଣ୍ଡଳ ଗୋ ବଉଳ !
ଗୋରୋଚନା ଚିତା ଭାଲେ ନାସାରେ ମୁକୁତା
ଗେଲ୍ଲଇ କହିବା ଛବ ଗୋ ବଉଳ ! ହାରଇ ବନିତା ଗୋ
ବଉଳ ! । ୩ ।

ଘଣ୍ଟ ଥାଇ କଣ୍ଟକଣ୍ଠେ ପଦକ୍ମ କାଛେଣୀ
ଘଣ୍ଟିଆଗୁଡ଼ିକ ଶୋଭା ଗୋ ବଉଳ ! ରତ୍ନ ଓଡଆଣୀ ଗୋ ବଉଳ !
ଘନ ଘନ କର ଦେଉ ଥାଇ ବେଣୁସ୍ୱନ
ଘଟେ ମନ ଥିର ନୋହେ ଗୋ ବଉଳ ଦହଇ ମଦନ ଗୋ
ବଉଳ !। ୪ ।

ନାନା ବର୍ଣ୍ଣେ ବନମାଳ ଲମ୍ବିଥାଇ ଉରେ
ନିରନ୍ତରେ ନ ଛାଡନ୍ତି ଗୋ ବଉଳ! ପାଶୋର ତପଲେ ଗୋ ବଉଳ!
ନୀଳମଣି ଅଙ୍ଗେ ଦିଶେ ଚନ୍ଦନ ଲେପନ
ନାହିଁଅ ଖଞ୍ଜନ ପ୍ରାଏ ଗୋ ବଉଳ ! ଚଞ୍ଚଳ ନୟନ ଗୋ
ବଉଳ । ୫ ।

ଚୂଳ ରଞ୍ଜିଥାଇ ଶିରେ ମୟୂର ପୁଚ୍ଛରେ
ଚାଲୁଥାଇ କେତେବେଳେ ଗୋ ବଉଳ! ଗାଈଙ୍କ ପଛରେ ଗୋ ବଉଳ
ଚମକାଉ ଥାଇ ଚକ୍ଷୁ ମନ୍ଦ ମନ୍ଦ ହସି
ଚକ୍ଷୁରେ ସେ ଶୋଭା ଏବେ ଗୋ ବଉଳ ! ଦିଶୁଅଛି ଆସି ଗୋ
ବଉଳ !। ୬ ।

ଛନ୍ଦିଥାଇ ଗୁଞ୍ଜୁରୀ କାଇଞ୍ଚ ଗୁଞ୍ଜମାଳ
ଛଟକ କରଣ ଥରେ ଗୋ ବଉଳ ! ଗୁହିଁଥାଇ ଛାଳ ଗୋ ବଉଳ !
ଛଇଲ ପଣକୁ ତାଙ୍କୁ ସମାନ କାହିଁଛି
ଛୁଅିସିଂହ ଗନ୍ଧବନ୍ଧୁ ଗୋ ବଉଳ ! ସେ ସୁଖ ଯାଇଛି ଗୋ
ବଉଳ !। ୭ ।

ଯେତେ ଆଭରଣ ଥିଲେ କାଇଂସି କଙ୍କଣ
ଯତନେହେଁ ବହୁଥାଇ ଗୋ ବଉଳ। ଜଗତଭୂଷଣ ଗୋ ବଉଳ !

ଯେତେ ସୁଖ ଆମ୍ଭଙ୍କୁ ସେ ଗୋପରେ ଦେଇଛନ୍ତି
ଜୀବଥିବା ଯାଏ ତାଙ୍କୁ ଗୋ ବଉଳ ! ନୁହଇ ମୂରୁଛି ଗୋ
ବଉଳ ! । ୮ ।

ଝାଡ଼େ ବୁଲଥିଲେ ଝୁରୁଥାଉଁ ଗୋପବାଳୀ
ଝୋଲେ ଝଳ ଯାଇଥାଇ ଗୋ ବଉଳ ! ପଡ଼ି ଗୋରୁଥିଲ ଗୋ ବଉଳ !
ଝସ କେତନ ସନ୍ଧାନ କାଲେ ତାସଙ୍ଗରେ
ଝିଙ୍କାରି ଭୃଙ୍ଗ ଝିଙ୍କାରେ ଗୋ ବଉଳ ! କହଇ ଶିଖରେ ଗୋ
ବଉଳ ! । ୯ ।

ନେଇ ସବୁସୁଖ ଏବେ ମଥୁରା ରହିଲେ
ନରେଖ କର ଆମ୍ଭଙ୍କୁ ଗୋ ବଉଳ ! କାହିଁ ନ ଲେଖିଲେ ଗୋ ବଉଳ !
ନ ଯରଇ ଧନ ଆଉ ତା ଗୁଣ ସୁମରି
ନଷ୍ଟେଁ ବଣକଲେ ତାଙ୍କୁ ଗୋ ବଉଳ ! ମଧୁପୁର ନାରୀ ଗୋ
ବଉଳ । ୧୦ ।

ଟେକ ଧଇଲେ ମନ୍ଦର ଆମ୍ଭର ହିତରେ
ଟେକ ପକାଇଲେ ଏବେ ଗୋ ବଉଳ ! ମଦନ ଚୋପରେ ଗୋ ବଉଳ !
ଟାଣପଣ ଯେତେ ଠାକୁରମାନଙ୍କ ତେତେ
ଟିକାଏ ନ ସହେ ମାନ ଗୋ ବଉଳ ! ଅଭାବ ସଙ୍ଗତେ ଗୋ
ବଉଳ ! । ୧୧ ।

ଠାକୁର ପଣକୁ ତାଙ୍କ ପରା ମେହ ଦିନା
ଠକସଙ୍ଗେ ପଡ଼ି ଏବେ ଗୋ ବଉଳ ! ହେଲେ ଏତେ ଅନା ଗୋ ବଉଳ
ଠିଆ ହୋଇଥାଇ ତରୁ କଦମ୍ବମୂଳରେ
ଠାରୁଥାଇ କ ଲ କର ଗୋ ବଉଳ ! ନୟନ କୋଣରେ ଗୋ
ବଉଳ ! । ୧୨ ।

ତକାଇତ ପଣେ ଏବେ ତକା କର ଗମ୍ଭ
ତୋଳାରୁ ନୀର ବହିବା ଗୋ ବଉଳ ! ଆଉ ନ ରହିଲା ଗୋ ବଉଳ !
ତାକଲେ ଶୁଣନ୍ତା ନାହିଁ କାହାକୁ କହିବୁ
ତଙ୍ଗର ମଦନ-ଦୁଖ ଗୋ ବଉଳ ! କେତେଦିନେ ସହିବୁ ଗୋ
ବଉଳ । ୧୩ ।

ଥାଲେ ଜାଣିଲୁଁ, ଦଇବ ଆମ୍ଭଙ୍କୁ ଛାଡ଼ିଲା
ଥୋକଲା ଅମୃତ ଯାହିଁ ଗୋ ବଉଳ ! କା ହାଥେ ପଡ଼ିଲା ଗୋ ବଉଳ !
ଥମ କହି ବୁଝାଇଲେ ଗୋପଯୁବତୀଙ୍କି
ଥଗ ମେଲିବାକୁ କଲେ ଗୋ ବଉଳ ! ମଥୁରାନାଥଙ୍କି ଗୋ
ବଉଳ । ୧୪ ।

ଏହି କଥା ଅମୃତାରେ ଅସାର ସେ କଲେ
ଅମୃତ ଖୁଆଇ ଏବେ ଗୋ ବଉଳ ! ପଛେ ବିଷ ଦେଲେ ଗୋ ବଉଳ !
ଏହି ଯେତେ ସିନା ପ୍ରାଣ ନ ଯାଇ ରହିଛି
ଅନୁବରତରେ ଏକା ଗୋ ବଉଳ ! ଅକୁଳ ହେଉଛି ଗୋ
ବଉଳ । ୧୫ ।

ଦେଉଡ଼େ ଦେଉଡ଼େ ସଙ୍କଟରୁ ରଖି ନ ରଖିଲେ
ତାହାଙ୍କୁ କି ବୋଲିବୁ ଗୋ ବଉଳ ! ତାଙ୍କର ସେ କଲେ ଗୋ ବଉଳ !
ତାପହର ବୋଲି ତାଙ୍କୁ ବୋଲୁଥାନ୍ତି ଲୋକେ
ତାହା ପ୍ରତକ୍ଷେ ସେ କଲେ ଗୋ ବଉଳ ! ଦେଇ କାମଶୋକେ ଗୋ !
ବଉଳ । ୧୬ ।

ଥଣ୍ଟ ଚିର ବକାକୁ ମାଇଲା ଦନୁ ତାଙ୍କୁ
ଥେଣ୍ଟର ଉପରେ ଥେଣ୍ଟ ଗୋ ବଉଳ ! ବୋଲି ତାଙ୍କୁ ଶଙ୍କୁ ଗୋ ବଉଳ

ଥଳ ବୋଲି ଅଥଳେ ପଡ଼ିଲେ ମରିଯାଇଁ
ଥାଉଁ ଥାଉଁ ବୁଦ୍ଧି କେହି ଗୋ ବଉଳ ! ଅଥଳେ ପଡ଼ଇ ଗୋ
ବଉଳ । ୧୭ ।

ଦୟାନିଧି ବୋଲି ବଡ଼ କରିଥିଲୁ ଆଶ
ଦୟାଯାକ କେଣେ ଗଲା ଗୋ ! ବଉଳ ହୋଇଲୁ ନିରାଶ ଗୋ ! ବଉଳ
ଦଣ୍ଡେ ଯେ ଯାହାକୁ ସ୍ନେହଥାଇ ବଡ଼ କରି
ଦୋଷ ଥିଲେ ନ ଥିଲେ ଗୋ ବଉଳ ! ତାକୁ ଦୂର କରି ଗୋ
ବଉଳ । ୧୮ ।

ଧର୍ମକୁ ସେହି ଛାଡ଼ିଲେ ଅମୃତ କି ଗଲା
ଧନ୍ୟପଣ ଅମୃତ ଗୋ ବଉଳ ! ଲୋକରେ ରହିଲା ଗୋ ବଉଳ !
ଧର୍ମଶୀଳ ବୋଲି ବୋଲୁଥାଆନ୍ତି ଜଗତେ
ଧରଣୀରେ ଥାଇ ତାଙ୍କୁ ଗୋ ବଉଳ ! କେ ଯିବ ପରତେ ଗୋ
ବଉଳ । ୧୯ ।

ନଷ୍ଟେଁ ତାଙ୍କ ଗୁଣ ଗୁଣି ଅମ୍ଭେ ନାଶ ଗଲୁଁ
ନଳଧରି ଶୁଆ ପ୍ରାଏ ଗୋ ବଉଳ ! ବେଭାରେ ହୋଇଲୁ ଗୋ ବଉଳ !
ନ ଆସିବେ ବୋଲି ଯା ଲଗାଇଲେ ପୀରତି
ନତ ସେ ଆଶ କରନ୍ତେ ଗୋ ବଉଳ ! ହେଉଛୁ କରତ ଗୋ ।
ବଉଳ । ୨୦ ।

ପ୍ରୀତିଠାରେ ଅପ୍ରୀତି କରିବା ନୋହେ ଭଲ
ପ୍ରଭୁ ହେଲେ କି ହେବ ଗୋ ବଉଳ ! ମିଛ ଯେବେ ବୋଲି ଗୋ ବଉଳ !
ପୂତନା ପ୍ରାଣ ନେଲା ହନୁଁ ତାଙ୍କୁ ଜାଣୁଁ
ପାପ ପୁଣ୍ୟ ଦୁଇ କଥା ଗୋ ବଉଳ ! ବିଚାରିବା ଗୁଣୁଁ ଗୋ

ବଉଳ । ୨୧ ।

ଫଳେ ସିନା ଜାଣୁଁ ସବୁ ଭଲମନ୍ଦ କଥା
ଫେଡ଼ି କେତେ କହିବୁ ଗୋ ବଉଳ ! ଫୁଲଶର ବଥା ଗୋ ବଉଳ !
ଫୋଡ଼ ଅର୍ଦ୍ଧାସୁର ଯେସନେ ବାହାର ହୋଇଲା
ଫୁରୁଣା ହେନ ଅମ୍ବର ଗୋ ବଉଳ ! ସେହିରୂପେ ଚଳ୍ଲ ଟଗା

ବଉଳ । ୨୨ ।

ବୁକୁ ହେଉଛନ୍ତି ବଦାର ସୁନ୍ଦର ତାହାଙ୍କୁ
ବାଇପ୍ରାଣେ ହେଉଥାଉଁ ଗୋ ବଉଳ ! କହିବୁ କାହାକୁ ଗୋ ବଉଳ !
ବିବେକ ପଣ ଛାଡ଼ିଲୁ ଚିତ୍ତ ବିଭ୍ରମରେ
ବିପରୀତ ବୁଦ୍ଧି ହେଲା ଗୋ ବଉଳ ! ପ୍ରୀତି କଥାଠାରେ ଗୋ

ବଉଳ । ୨୩ ।

ଭାସିଗଲା ଭେଲା ସେ ଯେ ଲଗାନ୍ତି କୂଳରେ
ଭସାଇ ତ ଏବେ ଦେଲେ ଗୋ ବଉଳ ! ବିରହ ଜଳରେ ଗୋ ବଉଳ !
ଭାବଗ୍ରାହୀ ଭରସାରେ ତାହାଙ୍କୁ ଭଜିଲୁଁ
ଭଗାର ହସାଇବାକୁ ଗୋ ବଉଳ ! ନିଜକୁ ଠକିଲୁ ଗୋ !

ବଉଳ । ୨୪ ।

ମଉଳାକୁ ମାଇଲେ ଯେ ଧର୍ମକୁ ନ ଗଣି
ମାନ କରି ଥାଉ ଅମ୍ଭେ ଗୋ ବଉଳ ! ତାଙ୍କଠାରେ ପୁଣି ଗୋ ବଉଳ !
ମହାସୁଖ ଏବେ କୁବୁଜାକୁ ସବୁଠାରୁ
ମଣିବାରି ବଡ଼ ସୁଖ ଗୋ ବଉଳ ! ଏହା ଶୁଣିମାରୁ ଗୋ

ବଉଳ । ୨୫ ।

ଜାଇଥିଲେ ସବୁ ଦେଖୁଥାଇ ଶୁଣୁଥାଇ

ଯାଉ ତ ନାହିଁ ଜୀବନ ଗୋ ବଉଳ ! ଅଛୁ କାହିଁ ପାଇଁ ଗୋ ବଉଳ !
ଯେମନ୍ତେ ସବୁ କୁସୁମ ଭ୍ରମରଙ୍କୁ ସର
ଜାଣିଲୁ ସେହ୍ନେ ମତ ଗୋ ବଉଳ ! ପୁରୁଷଙ୍କୁ ନାରୀ ଗୋ
ବଉଳ । ୨୬ ।

ରସିକ ଭ୍ରମର ସବୁ ଭାବ ଘେନ୍ଥାଇ
ରସ ପିନା ସବୁଠାରେ ଗୋ ବଉଳ ! ମନକୁ ରସଇ ଗୋ ବଉଳ !
ରଙ୍କ ରାଜା ହୋଇଲେ ସବୁହିଁ କରେ ଭୋଗ
ରାଜା ହୋଇ ରଙ୍କ ହେଲେ ଗୋ ବଉଳ ! ହୋଏ ସେହ୍ନ ଯୋଗ ଗୋ
ବଉଳ । ୨୭ ।

ଲକ୍ଷ୍ମୀ କର ଯାହାକୁ ନ ପାନ୍ତି ବ୍ରହ୍ମା ଶିବ
ଲୋଭୀ ହେଲେ ତାଙ୍କଠାରେ ଗୋ ବଉଳ! ଆମ୍ଭର କ ହେବ ଗୋ ବଉଳ!
ଲୋଡ଼ି ଯାହା ପାଦ ସେବା ନ ପାଇ କମଳା
ଲୀଳାରେ ସେ କୁବୁଜାକୁ ଗୋ ବଉଳ ! କଲେ କଣ୍ଠମାଳା ଗୋ
ବଉଳ । ୨୮ ।

ବଡ଼ଲୋକମାନଙ୍କର ବଡ଼ ଅବେଭାର
ବୃଷଭ ଚଢିଲେ ହର ଗୋ ବଉଳ ! ଦେଵେନ୍ଦ୍ରେ ସୁନ୍ଦର ଗୋ ବଉଳ !
ବୋଲ ଯାହା ଯାଇଥିଲେ ତାହା ତ ସେ କଲେ
ବଢ଼ିନଦୀ ସୋଲ ପ୍ରାଏ ଗୋ ବଉଳ ! ଗୋପନାରୀ ହେଲେ ଗୋ
ବଉଳ । ୨୯ ।

ସବୁହିଁ ସୁନ୍ଦର ଏକା ପ୍ରଭୁପଣ ଥିଲେ
ସୁନା ବନ୍ଧ ହେଲେ ନକ ଗୋ ବଉଳ ! ନ ବୁକାଇ ଭଲେ ଗୋ ବଉଳ !
ସବୁ କହିପାରୁଁ ଆମ୍ଭେ ନ ବୋଲିବା କଛୁ

ସବୁରୂପେ ସେ ଅମ୍ଭର ଗୋ ବଉଳ ! ଜୀବନ ନେଇଛନ୍ତି ଗୋ
ବଉଳ । ୩୦ ।

ସାନବଡ଼ ହୋଇ ଏ ଯେତେକ ବ୍ରଜବାସୀ
ସହସ୍ରେ କୋଣରେ ଥିଲେ ଗୋ ବଉଳ ! ଅମ୍ଭେ ତାଙ୍କ ଦାସୀ ଗୋ ବଉଳ
ସବୁଠାରେ ଅଛନ୍ତି ସେ ସବୁର ଠାକୁର
ସେ କିପାଁ ସେବକ ଠାରେ ଗୋ ବଉଳ ! କରନ୍ତେ ଅନ୍ତର ଗୋ
ବଉଳ । ୩୧ ।

ଷାଠିଏ ଦଣ୍ଡ ତାହାଙ୍କ ନାମ ଜପୁଥିବୁଁ
ଶରୀରେ ଜୀବନ ଥିଲେ ଗୋ ବଉଳ ! ତାଙ୍କୁ ନ ପାଶୋରିବୁଁ ଗୋ ବଉଳ !
ସବୁକଥା ଭଲ ଏକା କଥାକେ ହରିବ
ଶ୍ରୀହରି ଶ୍ରୀହରି ବୋଲି ଗୋ ବଉଳ ! ଜୀବ ଯେବେ ଯିବ ଗୋ
ବଉଳ । ୩୨ ।

ହରି କୃପା କଲେ ସେ କଥାଇ ଦେବ ପୁଣି
ହରଷ ହୋଇଣ ଥାଅ ଗୋ ବଉଳ ! ହରିଙ୍କୁ ମେଲାଣି ଗୋ ବଉଳ !
ହୃଦରେ ଅମ୍ଭଙ୍କୁ ଏକା ଦୟା କରିଥିବ
ହଟକି ଦେଖିଲେ ଏକା ଗୋ ବଉଳ ! ବାରତା କହିବ ଗୋ
ବଉଳ । ୩୩ ।

କ୍ଷମା କର ସବୁ ଦୋଷ ସୁଦୟା କରିବେ
କ୍ଷୋଭ ଛଡ଼ାଇ ସଂସାରେ ଗୋ ବଉଳ ! ପାଦ ସେବା ଦେବେ ଗୋ ବଉଳ !
କ୍ଷଣ ଗଲନ୍ତି ବଉଳ ! କ୍ଷୋଭ ନ କରିବ
କ୍ଷେମେ ଦୀନକୃଷ୍ଣ ବୋଲେ ଗୋ ବଉଳ ! କୃଷ୍ଣ ଭଜୁଥିବ ଗୋ
ବଉଳ । ୩୪ ।



# ବାନ୍ଧବୀ ଚଉତିଶା

ବାନ୍ଧବୀ ଚଉତିଶା ତୁଲ୍ୟ ହୃଦୟଦ୍ରାବକ କାରୁଣ୍ୟଗର୍ଭ ରସମୟ କବିତା ଓଡ଼ିଆ ସାହିତ୍ୟରେ ବିରଳ । ଏ ଚଉତିଶାର ଭାଷାରେ ଓ ଛନ୍ଦରେ ଏପରି ଏକ ଐନ୍ଦ୍ରଜାଲିକର ପ୍ରଭାବ ଅଛି ଯେ ଏହା ପାଠ କଲେ ଚିତ୍ତ ଚମତ୍କୃତ ହୋଇ ଅଭିଭୂତ ହୁଏ । ଏହା ଯେ ଗୋପାଳକୃଷ୍ଣଙ୍କ ପରିଣତ ପ୍ରତିଭାର ବିମୋହନ ବିକାଶ, କହିବା ବାହୁଲ୍ୟ ମାତ୍ର ।

କମଳଲୋଚନ କଂସ-କଣ୍ଟକରେ ଥାଇ
ଯଶୋଦାରତନ ରାଧା ଚରିତ ଚିତୋଇ ।
ଅହା ବାନ୍ଧବ ରେ! ।୧।

ଖଣେ ଯେ ପାଶରୁ ମୋତେ ନ କରୁ ଅନ୍ତର
ଗଲ ଦଇବ ବଶରୁ ହେଲୁ ଏତେ ଦୂର
ଅହା ବାନ୍ଧବ ରେ! ।୨।

ଗଳାରେ ବାହୁବଲ୍ଲୀ ବେଢ଼ାଇ ମୋହର
ଗେଲାଇ ଯେ ବୋଲୁଥାଉ ନୋହିବା ଅନ୍ତର
ଅହା ବାନ୍ଧବ ରେ! ।୩।

ଘର କରିଥାଇ ବନେ ତୋହ ପ୍ରୀତି ଯେନ
ଘର ଏବେ ଘୋର ହେଲା ଘନପୀନସ୍ତନ!
ଅହା ବାନ୍ଧବ ରେ! ।୪।

ଙେସ-ପଲଙ୍କ ପଡ଼ିବା ନ ସହଇ ଦେହ
ଙଷ୍ଟୁର ଦଇବ ସୁହାଇଲା ଏ ବିରହ
ଅହା ବାନ୍ଧବ ରେ ! ।୫।

ଚରାଇ ବୃନ୍ଦାବନରୁ ନେଉଥିଲେ ଧେନୁ
ଚିତ୍ତରେ ଦଣ୍ଡେକ ପ୍ରତେ କୋଟି କୋଟି ମନୁ
ଅହା ବାନ୍ଧବ ରେ ! ।୬।

ଛଇ ସେ ଅନ୍ତର ହୋଏ ତୁ ନୋହୁ ଅନ୍ତର
ଛଡ ତେଡ଼େ ସେନେହ ରହିଲୁ ଦୂରାନ୍ତର
ଅହା ବାନ୍ଧବ ରେ ! ।୭।

ଯାଉ ନାହିଁ ଜୀବନ ରହୁଛି କାହିଁପାଇଁ ?
ଯାତନାବନ୍ତ ଲୋକଙ୍କୁ ଯମ ନ ନିଅଇ ।
ଅହା ବାନ୍ଧବ ରେ ! ।୮।

ଝୁରୁଛି ମୁଁ ଏଣେ, ତେଣେ ଝୁରୁଅଛୁ ତୁହି
ଝଲକ-ବଦନୀ ଅହା-କରନ୍ତା କେ ନାହିଁ
ଅହା ବାନ୍ଧବ ରେ ! ।୯।

ନେତ୍ରକୁ ମୋହର ଆଉ ନିଦ୍ରା ନ ଆସଇ
ନାଗେଶ୍ୱରତନ ତୋର ରୂପ ଗୁଣ ଧ୍ୟାୟି
ଅହା ବାନ୍ଧବ ରେ ! ।୧୦।

ଟଳ ପଡ଼ୁଅଛି ଅଙ୍ଗ ଅନଙ୍ଗ ଅବଶେ
ଟେକସ୍ତନୀ ତ ହୋଇଥିବୁ ତାହାର ପାଶେ
ଅହା ବାନ୍ଧବ ରେ ! ।୧୧।

ଟିଆ ହେଲା ରୋମପ୍ରାନ୍ତେ ଲାଗିଅଛୁ ଶର
ଠଣ-ଚନ୍ଦ୍ରମୁଖୀ ଯେତେହେ ଶଙ୍କା-ଶରୀର
ଅହା ବାନ୍ଧବ ରେ ! ।୧୨।

ଡେର ହୋଇ ବସିବାକୁ ନାହିଁ ମୋ ଭରସା
ଡମ୍ବରୁମଧା କି ହୋଇଥିବ ତୋହ ଦଶା
ଅହା ବାନ୍ଧବ ରେ ! ।୧୩।

ଢାଳେ ବହୁ ଦୁହିଁଙ୍କି ଯା ଅନ୍ତରେ ରଖିଲା
ଢମ କାମ ସବ୍ୟସାଚୀ ସାଧନା ଶିଖିଲା
ଅହା ବାନ୍ଧବ ରେ ! ।୧୪।

ଅଙ୍ଗେ ଅନୁଭବ କରଥିଲେ ଜାଳାବଳ
ଏତେକେ ବିୟୋଗୀ ଅଙ୍ଗ ଦଅଇ ସେ ଜାଳ
ଅହା ବାନ୍ଧବ ରେ ! ।୧୫।

ତହିଁ ଉପରେ ନ ହେଲା ସହଜେ ନିଷ୍ଠୁର
ତୋହର କଥାକୁ ମୋର ହେଉଛୁ ବିସ୍ମର
ଅହା ବାନ୍ଧବ ରେ ! ।୧୬।

ଥାଉ ଥାଉ ମୋର ପାଶେ ଥରୁ ଡାର ଭୟେ
ଅସ୍ଥିର-ହୃଦୟା ଏବେ କରିବ ଅଥୟେ !
ଅହା ବାନ୍ଧବ ରେ ।୧୭।

ଦ୍ୱିରଦରାଜଗମନା ଦ୍ୱିଜରାଜମୁଖୀ
ଦୁଷ୍ଟ କାମ ବାଣେ ତୋତେ କରାଇଲା ଦୁଃଖୀ
ଅହା ବାନ୍ଧବ ରେ ! ।୧୮।

ଧିକ ମୋର ଧୈର୍ଯ୍ୟ ମୁଁ ଧରିଛି ପରାଣ
ଧରଣୀ-ମଣ୍ଡନ! ତୁ ପାଇଲୁ ଏ କଷଣ
ଅହୋ ବାନ୍ଧବ ରେ! ।୧୯।

ନିଷ୍ଠୁର ନାହାକୁ ଯେଉଁ ନାଶ କରେ ଅଗ୍ନି
ନିଷ୍ଠେ ନାଶ ଯାଇ ଯେତେକ୍ଷେ ଶରୀରେ ସାରମ୍ଭ
ଅହୋ ବାନ୍ଧବ ରେ! ।୨୦।

ପରାଣରେ ଯେବେ ଅଛୁ ତୋତେ ପରିହରି
ପ୍ରାଣମଣି ତୋତେ ଏବେ କହିବି କି କରି
ଅହୋ ବାନ୍ଧବ ରେ! ।୨୧।

ଫାଟି ଯାଉନାହିଁ ହିଆ କହୁଅଛୁ ଏହା
ଫୁଲଶର ପାଶେ ତୋତେ ପକାଇଲି ଯାହା
ଅହୋ ବାନ୍ଧବ ରେ! ।୨୨।

ବିରହ ବ୍ୟାଧିକି ବିହି ନ କଲା ଔଷଧି
ବିବେକୀ ନୋହିଲି ସେ ବୋଲିଲି କଥା ବଧି
ଅହୋ ବାନ୍ଧବ ରେ! ।୨୩।

ଭୋଜନ ଆଦରୁ ଅଙ୍ଗ ଭୋଗ ସୁଖ ଯେତେ
ଭୁଜଙ୍ଗ ବିଷ ପରାୟେ ହୁଅଇ ପରତେ
ଅହୋ ବାନ୍ଧବ ରେ! ।୨୪।

ମଳୟ ପବନ ମଲ୍ଲୟଜ ଶିଖୀ ଆଦି
ମଦା ପ୍ରୀତି କଥାମାନେ ହୁଅନ୍ତି ବିବାଦୀ
ଅହୋ ବାନ୍ଧବ ରେ! ।୨୫।

ଜନମ ହୋଇ ମନରୁ ମଗ୍ଲଇ ମଦନ
ଯେ ଯାହା କଲେହେଁ କଷ୍ଟ ପରରେ ସମାନ
ଆହା ବାନ୍ଧବ ରେ ! ।୨୬।

ରଖିଲ୍ଲ ବଧାତା ଆମ୍ଭ କପାଳେ ଏତକ
ରଥାଙ୍ଗ-ରଜନୀଦଶା ହେବ କାଲଯାକ
ଆହା ବାନ୍ଧବ ରେ ! ।୨୭।

ଲୀଳାବତୀ ମୋହଲାଗି ଛଡ଼ିଲୁ ଲୀଳାକୁ
ଲୋଚନେ ଏକା ମଣ୍ଡିଲୁ ଲୋତକମାଳାକୁ
ଆହା ବାନ୍ଧବ ରେ ! ।୨୮।

ବେପଥୁ ସ୍ତମ୍ଭ ରୋମାଞ୍ଚ ବିସ୍ୱର ବିବର୍ଣ୍ଣ
ବେଭାରେ ସ୍ୱେଦ-ପ୍ରଳୟ ହୋଇଲୁ ମଣ୍ଡନ
ଆହା ବାନ୍ଧବ ରେ ! ।୨୯।

ଶୀତ ଖରା ବରଷା ! ଏ ବାରମାସ ଯାକ
ଶ୍ରୀଅଙ୍ଗରେ କଷ୍ଟ ଭୋଗ ହୋଇଲା ଏତେକ
ଆହା ବାନ୍ଧବ ରେ ! ।୩୦।

ସଜନେ ହେ ଅଗ୍ରେ ନ ଥିଲେ ବନିତା ଲତା
ଶୀର୍ଣ୍ଣ ହୋଇ ହୁଅନ୍ତି ମସ୍ଥି ଶଯ୍ୟନରତା
ଆହା ବାନ୍ଧବ ରେ ! ।୩୧।

ସବୁ ଦୋଷ ମୋର କ୍ଷମା କରିବୁ ମୃଗାକ୍ଷି
ଶ୍ରୀକର ଧରି ତୋତେ ମୁଁ ଏତେ କହୁଅଛି
ଆହା ବାନ୍ଧବ ରେ ! ।୩୨।

ହସ୍ତରେ ଏତେକ ଲେଖି ମୃଦ୍ଧ ମୁଦ ଦେଇ
ହସି ବୋଇଲେ ଉଦ୍ଧବ ଯିବ ବେଗ ହୋଇ
ଅନ୍ଧା ବାନ୍ଧବ ରେ ! ।୩୩।

କ୍ଷପାକରବଦନୀ ରାଧାଙ୍କୁ ଏହା ଦେବ
କ୍ଷେମେ ଦୀନକୃଷ୍ଣ ବୋଲେ ମୋ ଦୁଃଖ କହିବ
ଅନ୍ଧା ବାନ୍ଧବ ରେ ! ।୩୪।



# ନବଘନ ଚଉତିଶା

ନବଘନ ଚଉତିଶା ଶ୍ରୀକୃଷ୍ଣଙ୍କ ବହୁ ବିରହ ଚଉତିଶା ମାନଙ୍କ ମଧ୍ୟରେ ଏକତମ। ଏଥିରେ ବର୍ଣ୍ଣିତ ଉପମାନ ଉପମେୟର ଚମତ୍କାର ବିନ୍ୟାସ ଏହାର ବିଶେଷତା। ଏ ଚଉତିଶାର ଭାବ, କୋମଳ ପଦାବଳୀଦ୍ୱାରା ଯେଉଁ ଅପୂର୍ବ ସଙ୍ଗୀତର ସୃଷ୍ଟି ହୋଇଅଛି ତାହା ସର୍ବତୋଭାବେ ଶ୍ରୀକୃଷ୍ଣଙ୍କ ଅସାମାନ୍ୟ ପ୍ରତିଭାର ନିଦର୍ଶନ।

ରାଗ କାମୋଦୀ।

କୃଷ୍ଣ କଂସ ନଗରେ ଜଳଦ ସମୟରେ
କଜ୍ଜଳ ମେଘ ବର୍ଣ୍ଣ ଦେଖି
କରନ୍ତି ଚିନ୍ତା ମନେ କେମନ୍ତେ ମୋ ବନ୍ଧୁନେ
ବଞ୍ଚିବ କଳାକରମୁଖୀ ହେ
ନବଘନ !

କହନ୍ତି ନବଘନ ଶୁହିଁ
କହିଁ ଅଛିଲ ମତେ ଦହ
କାମକେଳିକୁଶଳା କଣ୍ଠ-ରତନ-ମାଳା
ଡୋଳାପ୍ରତିମା ମୋର ନାହିଁ ହେ
ନବଘନ ! ।୧।

ଖଞ୍ଜନ-ବିଲୋଚନା ମତ୍ତ-ପିକ-ବଚନା
ଥାଆନ୍ତା ଯେବେ ମୋର କୋଳେ
ଖଣିକାନ୍ତିକି ଜେନ ଘନରସରେ ଦାଣି
ହୋଇ ଅସନ୍ତୁ ଭେଟିବେଳେ ହେ
ନବଘନ !
ଖେଦ ମୋ ଉଦୟେ ନୁହନ୍ତା
ଖଣକ ସୁଖ କେ କହନ୍ତା
ଖରକାମ ବଇରି ଶର ପ୍ରହାରି କରି
ଝପା ମୋ ଶରୀରେ ରହନ୍ତା ହେ
ନବଘନ ! । ୨ ।

ଗଜଗମନୀ ଗୋରୀ ମୋ ପଞ୍ଚପ୍ରାଣେଶ୍ୱରୀ
ପାଶରେ ନାହିଁ ମୋର ଯେଣୁ
ଗଜରାଜ ପରିଯେ ଦେଖି ତୁମ୍ଭଙ୍କୁ ଭୟେ
ଜାତ ହେଉଛୁ ମୋର ତେଣୁ ହେ
ନବଘନ !
ଗର୍ଜନ ବୃଂହିତ ସମାନ
ଗଳୁଛି ଜଳଧାର ଦାନ
ଗୁଣୁଅଛି ମନରେ ବକପନ୍ତି ଛଳରେ
ପ୍ରକାଶ ହୋଇଛି ଦଶନ ହେ
ନବଘନ ! । ୩ ।

ଘେନମାନଙ୍କୁ ଜୀବନ ଅଇଲ ଘନାଘନ
କାଳ ସ୍ୱରୂପ ଧରି କରି

ଘନବହ୍ନୀ ରସନା କରୁଛୁ ଯେତେ ଅନା
ଏଡେକେଡେଁ ଗଲ ମୁଁ ସର ହେ ।
ନବଘନ !
ଘଡ଼ଘଡ଼ି ଗର୍ଜ୍ଜନ ଛାଡ଼ି
ଘୋଟି ପଡ଼ୁଛୁ ମତେ ମାଡ଼ି
ଘେନୁଅଛୁ ମୋ ପ୍ରାଣ ପାପିଷ୍ଠ ପଞ୍ଚବାଣ
ଡୁମ୍ବର ସଙ୍ଗତରେ ପଡ଼ି ହେ
ନବଘନ ! । ୪ ।

ନାଗ ନାଗ ସରିଏ ମନେ ତ ପ୍ରତେ ହୁଏ
ବିଷ ବିଷ ଛାଡ଼ୁଛୁ ଯେଣୁ
ନିରନ୍ତରେ ବିଜୁଳି— ଛଳେ ରସନା ଶୂଳ
ଭସ୍ମ କରାଉଅଛୁ ତେଣୁ ହେ
ନବଘନ !
ନାଶିବ ମୋ ପ୍ରାଣ ସମୀର
ନିଶ୍ଚୟେ ହୋଇଛୁ ଡୁମ୍ବର
ନଷ୍ଟେ ଡୁମ୍ବଙ୍କୁ ପାଇ ମହା ପ୍ରବଳ ହୋଇ
ଅଛୁ କାମ ଲାଙ୍ଗଳକର ହେ
ନବଘନ ! । ୫ ।

ଟେଡ଼ିଲ ଏବେ ରାହୁ ପରାୟେ ଗ୍ରହୁଁ ଗ୍ରହୁଁ
ପୁଷ୍ପବନ୍ତକୁ ଗିଳିଦେଲ,
ଚନ୍ଦ୍ରା ଜଳରେ ସ୍ନାନ କରାଇ ପ୍ରାଣଦାନ
କାମ-ବ୍ରହ୍ମେ ଦେବାକୁ କଲ ହେ
ନବଘନ !

ଚିତ୍ତ ଭ୍ରମର କି କୁହିଲ,
ଚନ୍ଦ୍ର ତ ନାହିଁ ମିଳିଲା,
ଚଡ଼କ ଘାତେ ଶିର— ବରଲୁ ଚୂର୍ଣ୍ଣିକରି
ଦେଖି ଦେଖି ମସ୍ତକ ଗଲା ହେ
ନବଘନ ! । ୬ ।

ଛମା କରୁଣା ନାହିଁ ଯମ ସ୍ୱରୂପ ବହୁ
ଜୀବନ ଘେନିବାର ମୂଳ
ଗ୍ରୁଡ଼ ପ୍ରାଣବନ୍ଧୁକୁ କହୁଅଛୁ ଭ୍ରମୁକୁ
ଏତେକେ ନ ପାଅ ବିକଳ ହେ
ନବଘନ !

ଛଣକେ କର ଯେଉଁ ଘୋଷ,
ଛଡ଼ାଅ ପ୍ରାଣ ପ୍ରଭାଅଶ,
ଛଇଲ ଶିରୋମଣି ଏହା କର୍ଣ୍ଣରେ ଶୁଣି
କେମନ୍ତେ ନୋହିବ ବିନାଶ ? ହେ
ନବଘନ ! । ୭ ।

ଯେବେ ଭ୍ରମ୍ଭ ଭୂଲରେ ଥାଉ ଏକମେଳରେ,
ହୋଉ ଭ୍ରମ୍ଭ ସମସ୍ତ ପ୍ରାପ୍ତେ,
ଜୀମୂତ ମତେ କରି ବିଜୁଳି ହୋଇ ଗୋରି
ବରଷେ ଘନ ରସମୟେ ହେ
ନବଘନ !

ଯାବତ ତାପ ହୋଏ ଲୋପ,
ଜାତ ହୋଏ ପୁଲକ ଜାପ,

ଯଉଁ ରୂପେ ବଢ଼ଇ    ପରମ ପ୍ରେମ ନଈ
କହି ନୁହଇ ସେ ଅମାପ ହେ
ନବଘନ ! ।୮।

ଝୀନ-ବସନା ଶ୍ୱାସ    ଗନ୍ଧବହ ସଦୃଶ
ପ୍ରଖରେ ବହଇ ସେକାଳେ,
ଝସକେତନ ଉଠ—    ତରୁ ହୋଇ ଉତ୍କଣ୍ଠ
କାହିଁ ଭାସଇ ଅବହେଳେ ହେ
ନବଘନ !

ଝିଙ୍କାରି ଶବଦକୁ ଜିଣି
ଝଳ ଗୋଷ୍ଠି ମନ୍ମଥବାଣୀ
ଝମଣେ ନ ରହଇ    ଦାରିଦ୍ର୍ୟ ପ୍ରାପ୍ତେ ହୋଇ,
ଡାକଇ କନକ କିଙ୍କିଣୀ ହେ
ନବଘନ ! ।୯।

ନ ଜାଣଇ ବରଷା    ମତେ କର ଭରସା
ମୁଁ ଚାହା ଯେନି ସେହିମତ
ନଶା ସମସ୍ତ ଚକ୍ର—    ଦଶା ଦେବାରୁ ଶକ୍ର
ବାହନ ହୋଇଲ ବିପତ୍ତି ହେ
ନବଘନ !

ନାହିଁ ତୁମ୍ଭର କିଛି ଦୋଷ,
ନାହିଁ ମୋ କର୍ମେ ଭଲ ଲେଶ,
ନିଶାକର ଚନ୍ଦ୍ରମା    ଚନ୍ଦନ ଧୃଖ ସୀମା
ହେଲେ ବିରହେ ହୋଏ ବିଷ ହେ
ନବଘନ ! ।୧୦।

ଢେକ ଘର୍ମାକ୍ତ କାଳେ        ଯେଉଁ ଲୋକ ବକଲେ
ଯେନଇ ଲୋକର ବେଦନା
ଢଙ୍କଧର ଅଦରୁ        ବ୍ରହ୍ମାଣ୍ଡକର୍ତ୍ତାଠାରୁ
ବଡ଼ ତାହାଙ୍କୁ ବୋଲ ଯିନା ହେ
ନବଘନ !

ଢଳ ତ ଯିବ ତୁମ୍ଭ ପଣ
ଢିକାଏ ଯେଜ ମୋ କଷଣ
ଢେକ ଗର୍ଜ୍ଜନ କର        ପ୍ରାଣ ମୋର ନ ହର
ନୁହ ଅତଶଯ୍ୟ ଦାରୁଣ ହେ,
ନବଘନ ! । ୧୧ ।

ଠାଠିକ ତୁମ୍ଭେ ତୋର        ହଣ ମୋହୋର ଘର
ସ୍ୱହଜେ ଶ୍ୟାମ କଳେବର
ଠିକ କେକୀକଳାପ        ,ପର୍ଯ୍ୟେ ଇନ୍ଦ୍ରଚାପ
ସମ ବଜୁଳ ପୀତାମ୍ବର ହେ
ନବଘନ !

ଠିକ ଗୁଣ ତୁମ୍ଭର ଯେତେ
ଠାବ ସେ ହୋଇଛି ଜଗତେ
ଠାକୁରାଣୀ ଅମ୍ଭକୁ        ତୁମ୍ଭଙ୍କୁ ପେଷିବାକୁ
ବଶ୍ୱାସ ହୋଉଅଛ ଚତ୍ତେ ହେ ।
ନବଘନ ! । ୧୧ ।

ଢୋଲା-ପ୍ରତିମା ଏକା        ହେଲେ କରଇ ଦକା
ଦେଖି ତୁମ୍ଭଙ୍କୁ ନୟନରେ

ଡୋଳାରେ ଦେଖି ଦେଖି ବନ୍ଧୁ ମୋ ରଖି ରଖି
ଛାଡ଼ି ଅଇଲ ନିର୍ଦ୍ଦୟାରେ ହେ
ନବଘନ !

ଢକା ଉପରେ ହେଲା ଢକା
ଢକାଇଛ କାମ କଡ଼କା
ଢରେ ପ୍ରାଣ ଛାଡ଼ିବ କର୍ଣ୍ଣେ ଯେବେ ଶୁଣିବ
ଢାହୁକ ଡାକ କେକୀ କା କା ହେ
ନବଘନ ! । ୧୩ ।

ଣାଳେ ଭାସିଲୁ ଦୁହେଁ କାମନଦୀ-ପ୍ରବାହେ
ଦୁହେଁ ଦୁହିଁଙ୍କ ସିନା ଭେଲା,
ଣଳି ଜୀବନ ଯିବା ଏଥିରେ କେତେ ଅବା
ଯହିଁ ଦଇବ ଏତେ ହେଲା ହେ
ନବଘନ !

ଣାଳେ ମୋ ବୋଲ ଏବେ କର
ଣମ ପଣକୁ ପରିହର
ଣାଲନେତ୍ରୀ ଛାମୁରେ ବାରତା କହିବାରେ
ବନ୍ଧୁତ ଯଶକୁ ବିସ୍ତାର ହେ
ନବଘନ ! । ୧୪ ।

ଏବେ ଯେ ଭୂମି ଋତୁ ପ୍ରାପ୍ତେ ମକରକେତୁ
ହେଉରୁ ହୋଇଥିବା ବାଳା
ଉଚ୍ଚ କୁଚ ଗିରରେ ପୟୋଧର ରୂପରେ
ପଡ଼ିଥିବ ଚକୁର-ମାଳା ହେ
ନବଘନ !

ଅଶ୍ରୁଜଳ ବରଷୁଥିବ
ଅନଙ୍ଗ-କୃଷିକ ଜୀଇବ
ଅଙ୍ଗ ଭୂମିରେ ଶର— ସୀରଟେର ଦେଇ ଗାର
ଅନେକ କୃଷି ସେ କରିବ ହେ
ନବଘନ ! । ୧୫ ।

ତାପ-ତଟିନୀ ବଢ଼ି ଧଇର୍ଯ୍ୟ-ତଟ ଏଡ଼ି
ବିବେକ-ବିଟପୀ ତାଡ଼ିବ
ତରଳ ହୋଇ ଜ୍ଞାନ- ହଂସ ଉଡ଼ି ବହନ
ହୃଦୟ-ସରସୀ ଛାଡ଼ିବ ହେ
ନବଘନ !

ତୂଷ୍ଣୀ ହେବ ବଚନ-ପିକ
ତୋଷ ହେବ କାନ୍ତ-କେତକ
ତାଣ୍ଡବ କରୁଥିବ ଦରଦ-ବ୍ୟାଧି-ଶିବ—
ଦୂଷଣ-ବଇର ଅନେକ ହେ
ନବଘନ ! । ୧୬ ।

ଥରେ ଥରେ ପ୍ରଖର ବହେ ଶ୍ୱାସ-ସମୀର
ଥରେ ଥରେ ହୁଅଇ ଲୀନ
ସ୍ୱଳ୍ପ କର୍ମରେ ଏହା ଏ କାଳେ ଯାଇଁ ଯାହା
ନୋହିଲା ଧିକ ତା ଜୀବନ ହେ
ନବଘନ !

ଥ୍ୱରିମଣ୍ଡନୀ ସ୍ମରିଦନ୍ତୀ
ଥୂଳ-ନିତମ୍ବା ଦନ୍ତୀ-ଗତି

ଥାପିଲ୍ଲ ସୁଖ ପାଇ ପ୍ରେମ ପ୍ରୀତି ମୋ ଠାଇଁ
ପାଇଲ୍ଲ ଅନେକ ବିପତ୍ତି ହେ
ନବଘନ ! । ୧୭ ।

ଦୟାଳୁ-ଶିରୋମଣି ଦୟାରେ ମୋତେ କଣି
ଦେଇଛୁ ଯେତେ ଯେତେ ସୁଖ
ଦରଦ୍ଧାସିନୀ ହେବୁ ବସନ୍ତ ଆଦି ଋତୁ-
ଯାକ ମୁଁ ପାଇ ନାହିଁ ଦୁଖ ହେ
ନବଘନ !

ଦଇବ ଏବେ ଏହା କଲ୍ଲ
ଦାସବତ୍ସଲା ଦୂର ହେଲ୍ଲ
ଦଗଧ ପଟ ପ୍ରାୟେ ହୋଇ କେବଳ କାୟେ
ଆକାର ମାତ୍ରକ ରହିଲ୍ଲ ହେ
ନବଘନ ! । ୧୮ ।

ଧୂତ ଧ୍ୱଂସିନୀ ହେମ- କାଳେ ଅରୁଣ ଧୂମ
ପୁରେ ଯେ ଯେନ ବସି ଥାଇ
ଧାତା ରଚନା ଯେତେ ସୁଖ ସମସ୍ତ ମତେ
ଇତର ପରାୟେ ହେଲଇ ହେ
ନବଘନ !

ଧନ୍ୟ ତା କୋମଳ ଶରୀର
ଧୀରେ ଲଗନ୍ତେ ଅଙ୍ଗେ ମୋର
ଧ୍ୱନ୍ତାର କରୁଥାଇ ହଂସୁଳ ଭୁଲିପାଇଁ
ଅଙ୍ଗକୁ ଲକ୍ଷ୍ୟ ଦ୍ୟନ୍ତ ନବ ହେ
ନବଘନ ! । ୧୯ ।

ନାହିଁ ନୋହିବ ନବ ପଞ୍ଚ ଭୁବନେ ଭାବ-
ବନ୍ତୀ ସମାନେ ସୁଖକାନ୍ତି
ନୋହିଲେ କାହିପାଇଁ ଝୁରୁଛି ତାହାପାଇଁ
ନିଶି ଦିବସ ବହି କରି ହେ
ନବଘନ !

ନିରୂପମ ନାଗରୀମଣି
ନାହିଁ ତା ପରି ଗୁଣମଣି
ନାକ ନାଗ ତରୁଣୀ ତାହାର କଥା ଶୁଣି
ଲାଜେ ନ ଦେଖନ୍ତି ଧରଣୀ ହେ
ନବଘନ ! । ୨୦ ।

ପୂର୍ଣ୍ଣ-ଚନ୍ଦ୍ର-ବଦନା ମତ୍ତ-ପିକ-ବଚନା
ପଲ୍ଲବ-ଦଶନ-ବସନା
ପୁଷ୍ପ ବେଶ ହୋଇ ଯେ ଅସେ ମକରଧ୍ୱଜେ
ପୀଡ଼ିତ ହୋଇ ପୀନସ୍ତନା ହେ
ନବଘନ !

ପଞ୍ଚ ହୋଏ ପଲକପନ୍ତି
ପୁଲକେ ଫୁଲଇ ମୋ ଛତି
ପୀତବସନା ସଙ୍ଗେ ରତି-ପତି ପ୍ରସଙ୍ଗେ
କାହିଁ ଯାଇ ବସନ୍ତରତି ହେ
ନବଘନ ! । ୨୧ ।

ଫାଟି ନ ଯାଇ ଛତି ରହିଛି ତାହା ଚେତି
ଫୁଟେ ଜାଣିଲି ବଜ୍ର ଏହି

ଫୁଲ୍ଲାରବିନ୍ଦମୁଖୀ ମୁଖ ଯାହା ନ ଦେଖି
ତରଳ ନ ଯାଉଛି ବହି ହେ
ନବଘନ !

ଫାନ୍ଦେ ପଡ଼ିଲା ମୃଗ ପ୍ରାୟେ
ଫାଇ ବିକଳ ହୋଏ କାୟେ
ଫନ୍ଦା ହିଁ ଅଛି ଏବେ ବହ୍ନି ବା କଦାଚିତେ
ନଥିଲେ ପ୍ରାଣ ବନ୍ଧୁ ଯାଏ ହେ
ନବଘନ ! । ୨୨ ।

ବଡ଼ କର ଅଙ୍ଗରେ ଘେନି ଯେ ଥାନ୍ତି ନରେ
ଗ୍ରୀଷମେ କର୍ପୂର ଚନ୍ଦନ
ବିଶାଳନେତ୍ରୀ ପର— ସାଦେ ତାହାଙ୍କ ମୋର
ଲେଶେହେଁ ନ ବଳଇ ମନ ହେ
ନବଘନ !

ବୁଡ଼ିଲା ସବୁ ସୁଖ ମୋର
ବିଧାତା କଲା ଅବିଚାର
ବସନ୍ତ-ଗ୍ରୀଷମ ସମସ୍ତ ଋତୁ ସମ
ସମାନ ବଛର ମୋହର ହେ
ନବଘନ ! । ୨୩ ।

ଭୋଜନ ବିନୁ ଭୋଖୀ ମନେ ଯେମନ୍ତ ସୁଖୀ
ନୁହଇ ଭୂଷଣ ଭୂଷଣେ
ଭାବିନୀ ବିନୁ ଭାବ ସେହିମତ ଅଭାବ
ନୁହଇ ଦନବ କଷଣେ ହେ
ନବଘନ !

ଭୂପତି ବର୍ଷନ୍ତେ ସମ୍ପତ୍ତି
ଭିଗାରି ପରିଏ ଦିଶନ୍ତି
ଭୁରୁଶୋଭନୀ ଭାବ— ବଶି ବର୍ଷିଲେ ଜୀବ
ଥିବା କଥାହି ସେହି ମତ ହେ
ନବଘନ ! । ୨୪ ।

ମନ୍ଦ ମନ୍ଦ କହିବା ମନ୍ଦ ମନ୍ଦ ଚାହିଁବା
ମନ୍ଦ କଳ କୋକିଳ-ବାଣୀ
ମତେ ତ ଦିଶୁ ନାହିଁ ଉପମା ଅଛି କାହିଁ
ଆହା ସେ ରସିକ-ସିଦ୍ଧାଣୀ ହେ
ନବଘନ !

ମକରଧ୍ୱଜ କଳ୍ପଲତା
ମହତ କାମ-ଫଳ-ଦାତା
ମହୀ ମଣ୍ଡନୀ ମନ— ମୋହିନୀ ଜୀବଧନ
ମୋ ସୁଖ-ମନ୍ଦିର-ଦେବତା ହେ
ନବଘନ ! । ୨୫ ।

ଜମ୍ବୁନଦ-ଗୋରାଙ୍କ ନବୀନ କିଶୋରାଙ୍କ
ଦେଖିବା ଯାଏଁ ପ୍ରତେ ନାହିଁ
ଜପୁଥିବ ତାହାର ନାମ ତା ନିରନ୍ତର
ଯାବତ ଯାତନାକୁ ସହି ହେ
ନବଘନ !

ଜଳଜନେତ୍ରୀ କି କହିବ
ଯେମନ୍ତେ ଜୀବନ ରହିବ

ଜୀବନ-ମୁଖ୍ୟ ନାମ     ଯଥାର୍ଥ କର ବାମ-
ନେତ୍ରୀଙ୍କ ବାମ ତା ନୋହିବ ଯେ
ନବଘନ ! । ୧୬ ।

ରଖଇ ନାହିଁ ଯାହା     ସବୁକାଳେ ସମତା
ଭଙ୍ଗହିଁ କରଇ ତହିଁରେ
ରତଏ ଯେ ଯାହାକୁ     ଛାଡ଼ଇ ନାହିଁ ତାକୁ
ରଖଇ ଅନେକ ଦୂରରେ ହେ
ନବଘନ !

ରାଜୀବ ସୁନ୍ଦର ଏ ସ୍ୱାତି
ରକ୍ତ ପତ୍ରର ଏ ଅମୀଭ
ରୋଲମ୍ବ ଗୁଣ ନେଇ     ଫୁଲ ଧନୁରେ ଦେଇ
ଫୁଲ କାଣ୍ଡେ ମହୁଇ ମତ୍ତ ହେ
ନବଘନ ! । ୧୭ ।

ଲୋଚନ କଣ୍ଠି ଧର     ଲୋଚନେ ଅଙ୍ଗ ତାର
ଲବଲ୍ଲ ଅବଲେଥ ଏତେ
ଲୋକ ଦୁଖ ନ ଜାଣି     ବନ୍ଧଇ ପୁଣ ପୁଣି
ବାଳଶ ଅବବେକ ଚକ୍ରେ ହେ
ନବଘନ !

ଲେଶେ ବସ୍ତ୍ର ନ ଚଳଇ
ଲଳନା ଅଙ୍ଗେ ପ୍ରହାରଇ
ଲୁବ୍ଧାନ୍ଧ ବିଶେଷ     ନ ଜାଣି ଆଶସ୍ୟାଷ
ପରଏ ଆପଣେ ମାରଇ ହେ
ନବଘନ ! । ୧୮

ବର୍ଷୁଅଛୁ ଏବେ          ତୁମ୍ଭ ସଙ୍ଗତେ ଯେବେ
ଯିବ ଏ ବକ୍ଷଶ୍ରୀ ପାଶକୁ
ବଧୂ-ବନ୍ଦନୀ ବାଳା          କୋମଳା ପ୍ରେମଶୀଳା
ଅବଶ୍ୟ ଭଜିବ ନାଶକୁ ହେ
ନବଘନ !

ବିଷଧର ପାଇଲେ ପୟ
ବୃଦ୍ଧି ଯେ କରଇ ବିଷୟ
ବାଣକେତୁ ଆଶ୍ରୟ          ପାଇଲେ କରେ ଜୟ
ଏହୁ ଯେନ କରୁଛି ଭୟ ହେ
ନବଘନ ! । ୨୯ ।

ସହକେନ୍ଦେଁ ଶୀତଳ          କର୍ପୂର ନାରକେଳ
ଲେମ୍ବୁ ସଂଯୋଗୁ ହୋଏ ବିଷ
ସୁଜନ ସଙ୍ଗେ ଯେବେ          ଦୁର୍ଜନ ହୋଏ ତେବେ
ଅବଶ୍ୟ ହୋଏ ଅପଯଶ ହେ
ନବଘନ !

ସଉଦାମିନୀ ସଙ୍ଗେ ଥିବ
ସନ୍ତକେ ତ ଧର୍ମୀର ଯିବ
ଶିଖୀ ବକ ଡାହୁକ          ମଣ୍ଡୂକ ମହା ଡାକ
କାହାକୁ କେତେ ନବାଉବ ହେ
ନବଘନ ! । ୩୦ ।

ସେ ତ ତୁମ୍ଭ ଦମକ          ଶୁଣି ଲତେ ଚମକ
ଝଂସକେତୁ ଦମକ ଦେଖେ

ଟିଭ କଣ୍ଠ ବିକଟ  ଡାକିବାର ଚଟ୍ଟ
ବନ୍ଧୁଙ୍କୁ ନ ରକ୍ଷିବ ପ୍ରାଣେ ହେ
ନବଘନ !
ସବୁ ସମ୍ପଦ ସରଯିବ
ସପାରେ ଲୋକେ କ ବୋଲିବ
ଶୁଭେ ଜୀବନ ଥିଲେ  ଧାତା ସମ୍ମୁଖ ହେଲେ
ସମସ୍ତ ସୁଖହିଁ ହୋଇବ ହେ
ନବଘନ ! । ୩୧ ।
ସଲିଳଧର ଯାଅ  ଅପଯଶ ନ ପାଅ
ସବୁ ଦୁଷ୍ଟ ମାନଙ୍କୁ ଘେନ
ସମସ୍ତେ ଉପକାର  କଲେ ଯେଣୁ ମୋହର
ଜୀବଧନ ନ କଲ ଦାନ ହେ
ନବଘନ !
ସକ୍ରୋଧେ ବୋଲିବୁ ମୁଁ ଯାହା
ମନରେ ନ ଘେନମ ତାହା
ସ୍ନେହ ଥାଇ ଯହିଁରେ  ମାନ କର ତହିଁରେ
ହୃଦରେ ବିଚାରବ ଏହା ହେ
ନବଘନ ! । ୩୨ ।
ହଂସ-ଗମନୀ ଧନୀ  ବିଚ୍ଛେଦ-ଦୁଃଖ ଘେନି
ମୋ ମନ ମୋହର ନୁହଇ
ହୃଦମ୍ବୁ ନୋହେ ଅସ୍ତେ  କଥା ପ୍ରସଙ୍ଗ ପ୍ରାଏ
କେତେବେଳରେ କି କହଇ ହେ
ନବଘନ !

ହର୍-ବଇର ଶରେ କ୍ଷୀଣ
ହେଉଛୁ ଥରେ ଥରେ ଅନ
ହରଷ ହୋଇ ଘନ କର ଏବେ ଗମନ
ନ ଘେନ କଛୁ ଅଭମାନ ହେ
ନବଘନ ! । ୩୩ ।

କ୍ଷମା ସାଗର ବର ରସିକ ଗିରିଧର
ବୋଲେ ଜଳଦ ବାହୁଡ଼ିଲା
କ୍ଷପାକରବଦନୀ କ୍ଷୋଭ କରିଲା ଯେନ
ଗୋକୁଳମାର୍ଗ ନ ମାଡ଼ିଲା ହେ
ନବଘନ !

କ୍ଷେମେ ଏ ଚଉତିଶା ଶୁଣ
ଛାଡ଼ ମନରୁ ଅବଗୁଣ
କ୍ଷମା ସାଗର ଲୋକ— ମାଥା ଚରଣେ ଲୋକ
ଦୀନକୃଷ୍ଣ ଦାସ ଶରଣ ହେ
ନବଘନ ! । ୩୪ ।




କଟକ ପ୍ରାଚୀ ପ୍ରେସରେ ଶ୍ରୀ [illegible] ଚରଣ ପଟ୍ଟନାୟକ ବି, ଏ, ଙ୍କ ଦ୍ୱାରା ମୁଦ୍ରିତ ।

# ଚଉତିଶା ଚନ୍ଦ୍ରିକା

## ରାଧାଦର୍ଶନ ଚଉତିଶା

୩। ଗଙ୍ଗାଧରରିପୁମହାନନ୍ଦ—ମହାଦେବଙ୍କ ଶତ୍ରୁ କାମ। କାମରୂପ ମହାନନ୍ଦ। ହେମ ତରଣୀ—ସୁନାର ନୌକା। ଅନ୍ତାଳ—ପାଲ।

୪। ମହାମତ୍ତକଳ ମଞ୍ଜୀର ଡାକ—ମତ୍ତ ହଂସମାନଙ୍କର କଳ କଳ ଧ୍ୱନି। ଡମ୍ବର—ଆଡ଼ମ୍ବର। ଅର୍ଥାତ୍ ସେହି ରମଣୀର ପାଦ ଅଳଙ୍କାରର ଧ୍ୱନି ମତ୍ତ ହଂସମାନଙ୍କ କଳ ରବକୁ ପୁବା ହଟାଇ ଦେଉଅଛି।

୫। ନୀଳକଣ୍ଠ—ମହାଦେବ।

୬। ଚନ୍ଦ୍ରାର୍ଦ୍ଧଭାଲ—ଅର୍ଦ୍ଧଚନ୍ଦ୍ର ରୂପ କପାଳ। ଗନ୍ଧଉର୍ଦ୍ଧ୍ୱତିଲକ—ମୃବାସ୍ଥ ଚନ୍ଦନର କଳୀ।

୭। ଛଟେଣ—ଷଣେ ('ଷ' ସ୍ଥାନରେ 'ଛ' ଓ 'ଛ' ସ୍ଥାନରେ 'ଷ' ର ବ୍ୟବହାର ଅନେକ ଚଉତିଶାରେ ଦେଖାଯାଏ) ଛତବିତ—ବ୍ୟତିବ୍ୟସ୍ତ। ରତିପତି ଶରେ—ମଦନ ଶରରେ। କର୍ମରେ ହେବେ ବିବାଦୀ—କର୍ମ ଅର୍ଥାତ୍ ନିଜ ଭାଗ୍ୟ ସଙ୍ଗେ କଳହ କରିବେ ବା ସେହି ରମଣୀ ସଙ୍ଗେ କ୍ରୀଡ଼ା କରିବାକୁ ପରସ୍ପର ମଧ୍ୟରେ ବିବାଦ କରିବେ।

୮ । ଜମ୍ବୁନଦ କଳେବର—ସୁନାବର୍ଣ୍ଣ ଦେହ ।

୯ । ବାଳଙ୍କ—ଜୀବନର କାପ, ଫୁଲଶର—ମଦନ ।

୧୦ । ନବପଞ୍ଚ ଭୁବନ—ଚଉର୍ଦ୍ଦଶ ଲୋକ । କାମ ଜୟରଥ—କନ୍ଦର୍ପର ବିଜୟରଥ କପଟ ସ୍ତ୍ରୀ ରୂପରେ ଜାତ ହୋଇଅଛି ।

୧୧ । ଟେକ—ଉଚ୍ଚ, ଚକୋଏ- - - - - - - - - - - - - - - - -
ତାହାର ଉଚ୍ଚ କୁଚ ଯୁଗଳ ଚକ୍ରବାଡ଼ ପର୍ବତ ପରି ଟେକି ହୋଇ ତାର ଅକ୍ଷିରୂପ ସୂର୍ଯ୍ୟଙ୍କୁ ଭୂଇଁ ଦେଖାଇ ଦେଉନାହିଁ । ଅର୍ଥାତ୍ ସ୍ତନଯୁଗଳ ଟେକ ହୋଇଥିବାରୁ ତାର ଅକ୍ଷି ତଳେ ପଡୁନାହିଁ; ସ୍ତନରେ ପଡୁଛି ।

୧୨ । ଠଣେ ପଦ୍ମକୋଳେ- - -ମୁଖରୂପ ପଦ୍ମରେ ଚକ୍ଷୁରୂପ ଖଞ୍ଜନ ପକ୍ଷୀଦ୍ୱୟ ଖେଳବାର ଦେଖିଲି ।

୧୩ । ଡମରୁମଧ୍ୟା ଶୋଭନୀ—କ୍ଷୀଣକଟି । ଡମ୍ବର—ଆଡ଼ମ୍ବର । ତାଳିମ୍ବନେତ—ତାଳମ୍ବ ବର୍ଣ୍ଣ ପାଟ ।

୧୪ । ଚମ—ଅନ୍ତରଞ୍ଜନ କର । ଚାଲି ଗୃହିଣୀ—ବାଙ୍କ ଗୃହିଣୀଟିର ଶୃଙ୍ଗାର ଭାବକୁ ଜଗାଇ ମନକୁ ଓଟାଇ ଦେଉଥିଲା ।

୧୫ । ତାହାର ରଙ୍ଗ ଅଧର ଶୃଙ୍ଗାର ରସ ରୂପ ଅମୃତର ଘର ଏବଂ ତହିଁରେ ହସ ଫୁଟି ବାଳସୂର୍ଯ୍ୟଙ୍କ କୋଳରେ ଚନ୍ଦ୍ରରେଖା ରହିଲେ ଯେପରି ମନୋରମ ଦିଶେ ସେହିପରି ମନୋରମ ଦିଶୁଥିଲା ।

୧୬ । ଜନଲୋକ ସୁଖ ସୀମା—ଜନଲୋକରେ ସମ୍ଭବ ସୁଖର ଚୂଡ଼ାନ୍ତ । ତାହାକୁ ସେହି ଉପମା—ଅର୍ଥାତ୍ ତା ସଙ୍ଗେ ଉପମିତ ହେବାକୁ ଆଉ କେହି ନାହିଁ । କାମ ଅର୍ଥାତ୍ କନ୍ଦର୍ପର ତାହାର ଯୋଗୁଁ ଏଡ଼େ ଭାରସା ବା ଗର୍ବ ।

୧୭ । ପାଦକ ପରେ ପାଦେ ପକାଇ ସେ ଯେଉଁରୂପେ ଅଗ୍ରସର ହୁଏ ତାହା ବା କଣ ବର୍ଣ୍ଣନା କରିବି ? ଥଳ ପଦ୍ମଗୁଡ଼ିଏ ତୋଳି ବିଛିଦେଲେ ଯେପରି ଦିଶିବ ତାର ପାଦପକା ଅବିକଳ ତଦ୍ରୂପ ।

୧୮ । ଦେହ ଅଦେହ ଦେହ କରିଗଲା——ଅନାଇବା ମାତ୍ରକେ ଦେହକୁ ଅଦେହ ଦେହ ଅର୍ଥାତ୍ କାମ ବିକାର ଯୁକ୍ତ ଦେହ କରିଦେଲା ।

୧୯ । କନ୍ଦର୍ପ ଧନୁଶର ଧରି ତର୍ଜିଲା ପରି ଅର୍ଥାତ୍ ତର୍ଜନ କଲାପରି ତାହାର ଭ୍ରୂଭଙ୍ଗୀ ଓ ନେତ୍ର ଶୃଙ୍ଖଲ୍ୟ ମୋତେ ବୋଧ ହେଲା ।

୨୦ । ତାର ଏ ସବୁ ଶୋଭା ମୋ ଚକ୍ଷୁରେ ବାସକରି ମୋତେ ବହୁ ସୁଖ ଦେଲା ଓ ବହୁ ବିଦ୍ୟାଥିଲେ ତା ଯେପରି ଅଙ୍ଗକୁ ଭାଷା ହୁଏ ନାହିଁ ସେହିପରି ଏହାସବୁ ଜଳେ ସୁଦ୍ଧା ଭାରୀ ବୋଧ ହେଲେ ନାହିଁ ।

୨୧ । ପରମାନନ୍ଦ ସମ୍ପତ୍ତି—ଶ୍ରେଷ୍ଠ ବ୍ରହ୍ମାନନ୍ଦ ସଂପଦ

୨୨ । ଫୁଲ୍ଲ—ଫୁଟିଥିବା, ଭଲଫୁଲ—ରାଣିଫୁଲ, ପେଡ଼ି—ପିଠାଣ । ସୁରଗୁରୁ—ଦେବତାଙ୍କ ଗୁରୁ ବୃହସ୍ପତି, ସୁରଗୁରୁଦଶା ପଞ୍ଚମ ବୃହସ୍ପତି ଦଶା—

୨୩ । ବିଷମଶର—ମଦନଶର

୨୪ । ଭବରିପୁଭୟ—କନ୍ଦର୍ପ ଭୟ

୨୫ । ଯାଉଥିଲା କଥାରଙ୍ଗେ—କୌତୁକରେ କଥାବାର୍ତ୍ତା କରି ଯାଉଥିଲା । ଜାତି ପଦ୍ମିନୀ—ସେ ପଦ୍ମିନୀ ଜାତୀୟା ସ୍ତ୍ରୀ ଥିବାରୁ ଭ୍ରମରମାନେ ତାର ଅଙ୍ଗ ସୁବାସ ଆଘ୍ରାଣ ପାଇ ଚାରିପାଖେ ବେଢିଥିଲେ ।

୨୭ । ସୁଶ୍ରୋଣୀ—ଉତ୍ତମ ନିତମ୍ବା, ରଣରଣ—ମଦନ, ରଣ-ରଥ—ଯୁଦ୍ଧଯାନ ।

୨୮ । ଲଳିତ ଅଲକାବଳି—ମସୃଣ ଚୂର୍ଣ୍ଣ କୁନ୍ତଳ ନିଚୟ ।

୩୦ । ସର୍ବାଙ୍ଗ ଅଳଙ୍କାର—ଯେ ରମଣୀ ଅଳଙ୍କାରକୁ ସ୍ୱୟଂ ଅଳଂକୃତ କରିଅଛି ।

୩୧ । ଶଶୀଶେଖର—ମହାଦେବ ।

୩୪ । ଯେଚ୍ଛେ—ଶୁଭରେ । ଛାୟାପତିସୁତା—ସୂର୍ଯ୍ୟତନୟା ଯମୁନା ।

---

## ଅମୃତନିଧି ଚଉତିଶା

୧ । କାଳିନ୍ଦୀ—ଯମୁନା, ପ୍ରଫୁଲ୍ଲ—ଫୁଟିଥିବା । କେ ବୋଲଇ—ତୋର ମୁଖକୁ ଏବଂ ଫୁଲ୍ଲ ପଦ୍ମ, କନକ ଓ ଦର୍ପଣ ସହିତ ତୁଳନା କରୁଛି ? ତାର କଣ ଜନ୍ମ କାଳରୁ ଆଖି ନାହିଁକି ? ସେ କଣ ତୋର ସୁହାଣୀ ଛଟା ଦେଖିନାହିଁକି ? ତାର ଏ ତୁଳନା କଥା ଶୁଣି ମୁଁ ଅତ୍ୟନ୍ତ ମର୍ମାହତ ହୁଏ ।

୨ । ଖଳ ଲୋକ—ମନ୍ଦ ପ୍ରକୃତିର ଲୋକ । ଖଳବୋଲ—ଖରାପ ବଚନ । ଖଞ୍ଜନ୍ତି—ଉପମା ଦିଅନ୍ତି । ପଶ୍ୟ ସମୁତା—ଦେଖ । ଖେଦ—ମନୋଦୁଃଖ ।

୩ । ଗୁଣିଲେ—ଚିନ୍ତା କଲି, ତାହାଙ୍କ—ପଦ୍ମ ସୁବର୍ଣ୍ଣ ଓ ଚନ୍ଦ୍ର ଏମାନଙ୍କର ଅବଗୁଣ—ଦୁର୍ଗୁଣ ବର୍ଣ୍ଣିଲେ । ଗଗନ ନକ୍ଷତ୍ର ପରି—ଆକାଶର ତାରା ପରି ଅଗଣିତ ।

ଦେଲା ବାଧି—ନାଶ କଲା ।

୪ । ଘର୍ମକର—କର=ସୂର୍ଯ୍ୟଙ୍କ କିରଣ, ଘର୍ମ୍ମେ—ଦହନରେ । ଦେନାଦେନ—ସ୍ନେହ ।

୫ । ତର୍ପଣ—ସନ୍ତୋଷ ।

୬ । ପୁଣ୍ଡ୍ରକ ବାସୁଦେବ—ପୁଣ୍ଡ୍ରକକନାମ ଅସୁର କପଟରେ ବାସୁଦେବଙ୍କ ରୂପ ଧରିଥିଲା ଓ ତନ୍ନିମନ୍ତେ ମରଣ ଦଶା ପ୍ରାପ୍ତ ହୋଇଥିଲା । ଚ୍ୟୁତ ହେଲା—ମଲା । ଲଚ୍ଛି—ଲକ୍ଷ୍ୟ । ଚକ୍ଷୁଅଗେ···ତୋ ହରିଣ ଗୃହିଣୀ କ ଅନୁକରଣ କରିବାକୁ ହରିଣାଙ୍କ ହୋଇଅଛୁ ।

୭ । ଛଇଲ—ମୋହନ—ସୁଖ—ଘର—ରସିକଙ୍କୁ ମୋହିବାର ସୁଖଘର ହୋଇଅଛି । ଚନ୍ଦ୍ର କଥା ହୋର— ଚନ୍ଦ୍ର କଥା ଦହୁଡ଼ି । ଛୀର—କ୍ଷୀର ।

୮ । ଯାହା ଚନ୍ଦ୍ରପକ୍ଷେ···ଚନ୍ଦ୍ରର ଯେ ବପୁ ତାକୁ ଦଣ୍ଡ ବୋଲି କହିବାକୁ ହେବ । ତିଥିଭେଦ—ପୂର୍ଣ୍ଣିମା । ରାହୁଦାଡ—ଗ୍ରହଣଗ୍ରସ୍ତ ହୁଏ । ଜାଣୁମଣି—ବିବେକବତୀ । ଜଳନିଧି ସୁତ···ସମୁଦ୍ରରୁ ଜାତ ବୋଲି ଅଣେ ବା ଗବା ବହି ।

୯ । ଝଷକେତୁ—ମଦନ । ଝିମନ୍ତେ—ଝିକଏ । ଝାଡ଼—ବନ ଝଗଡ଼ୁଛି—ଦୁଃଖ ପାଉଛି ।

୧୦ । ନବବ୍ରତ ଦନ—ବାଳକ ଦନ ।

୧୧ । ଊର୍ଦ୍ଧ୍ୱରେତା—ଋଷି । ଝେଙ୍କଥାନ୍ତି—ପ୍ରଶଂସା କରିଥାନ୍ତି ।

୧୨ । ହେଲେ ସବୁଭାଷୀ—ମନକୁ ଯାହା ଆଇଲା ତାହା କହିଲେ । ଅଣି—ବଳ ।

୧୩ । ଡୋଲେଣ୍ଟଶ୍ୱା—ନୟନାନନ୍ଦକାରଣୀ । ଡହେ—ଦହନ କରେ । ଡଙ୍କ ଲାଗିଲେ—ସାପ କାମୁଡ଼ିଲେ ।

୧୪ । ଚମତ୍କାର—ଫୁଲ୍ଲଇକଚ, ଗାଲକେଶୀ—ବଙ୍କନୟନା । ଛତ୍ରୀ—ରଜା, ଚମ୍ପକେଣୀ—ଫୁଲ୍ଲପଣରେ । ଫୁଲପନ୍ଥ—ଫୁଲଶର । ଗାଲବାଲୁ—ଭାଙ୍ଗିବାଲୁ । ନବମନ୍ତ୍ରୀ—ଦକ୍ଷବ୍ୟକ୍ତି

୧୫ । ଅବଧାର ତୋର···ତୋର ବୃନ୍ଦାବନ ଗମନ ନୋହି ଥିଲାରୁ । ମହାଦେବଠାରେ—ମହାଦେବଙ୍କ ହାତରେ । ଅଳକନୀ—ସୁକେଶବତୀ ।

୧୭ । ଘେନାଘେନ—ସପ୍ରେମ ଠାଣି ଠଣି । କହ୍ନି ଯୋଗ୍ୟତା ଘେନ—କେଉଁ ପଣ୍ଡିତ ପଡ଼ୋଅଛେର ।

୧୮ । ଅବନୀ—ପୃଥିବୀ । ଦମ୍ଭହତ ବାନା—ଧୈର୍ଯ୍ୟନାଶନ ପତାକା ଥାଣ୍ଟି—ଦେବ । ଛନ୍ତବନ୍ତ—ବ୍ୟସ୍ତବ୍ୟସ୍ତ । ଧାତ—ହୃଦୟ ।

୧୯ । ତୋ ଅକ୍ଷିର ଧଳା, କଳା ଓ ରଙ୍ଗ ଦେଖିଲେ ମନେହୁଏ ତହିଁରେ ଧାତା, ହର ଓ ହରଙ୍କର ସମନ୍ୱୟ ଘଟିଅଛି । ଧୃତଧ୍ୱଂସୀ—ଧୈର୍ଯ୍ୟନାଶିନୀ ।

୨୦ । ତୋ ନେତ୍ର ନାଗରୀ ରସବନ୍ତୀ—ତୋ ଅକ୍ଷି ରସିକନୀ ରମଣୀ ସାଙ୍ଗେ ତୁଳନୀୟ ।

୨୧ । ପାକଶାସନ—ଇନ୍ଦ୍ର ।

୨୨ । ଫୁରୁଛି—ସ୍ଫୁରିତ ହେଉଅଛି । ସ୍ଫୁଟମୁଖୀ—ପୂର୍ଣ୍ଣ ଯୌବନ ହେତୁରୁ ଯାହାର ମୁଖ ଫୁଟିଲା ପରି ଦିଶୁଥାଏ । ଫୁଲ୍ଲ ଅରବିନ୍ଦେ—ଫୁଟିଲା ପଦ୍ମରେ । ଫୁରୁଣାରେ—ଆନନ୍ଦରେ । ଫୁଲଲିଟ—ଭ୍ରମର । ଲକ୍ଷି—ଲକ୍ଷ୍ୟକରି ।

୨୩ । ଫାଇ ଲମ୍ବ ପାଇ—ଶୁକ୍ଳରଙ୍ଗ କାଳିମା ଥାଇ କର୍ଣ୍ଣାନ୍ତ ପର୍ଯ୍ୟନ୍ତ ରଙ୍ଗ ତରଙ୍ଗ ଭାବରୁ ।

୨୪ । ହୃତମନା—ଅଧୈର୍ଯ୍ୟ । ଅନା—ପ୍ରକାର । ଭାବ ନ ଜାଣାଇ
ଯେଉଁ ଲୋକ—ଅରସିକ ଲୋକ ।

୨୫ । ମହାଯୋଗୀ—ମହାପର୍ବରେ—ମହାମହା ଋଷିମାନଙ୍କର
ଧୈର୍ଯ୍ୟରୂପ ମହାମେରୁକୁ ଟାଳବାକୁ ଯେ ବଜ୍ର ଅଟେ ।

୨୬ । ଯେମନ୍ତ ମୋ ସଙ୍ଗେ ରାମଥିଲେ—ତୁମ୍ଭ ଶୁକ୍ଳବର୍ଣ୍ଣ ଓ ମୁଁ
କୃଷ୍ଣବର୍ଣ୍ଣ । ଅମ୍ଭେ ଦୁହେଁ ଜଗତର ଆନନ୍ଦଦାୟକ । କୃଷ୍ଣ
ଓ ଧବଳ ଏହି ଦୁଇ ରଙ୍ଗର ମିଶ୍ରଣ ଯୋଗୁଁ ତୋ ନେତ୍ର
ମଧ୍ୟ ତଦ୍ରୂପ । ସମ୍ଭବବା—ଜନ୍ମହେବା ।

୨୭ । ସ୍ମିତବାଣୀ—ଦରହାସ ମିଶା କଥା । ରାଗବନ୍ତ—ଅନୁରାଗୀ

୨୮ । ଲଳତଲୋଲ ମହିମା—ଚକ୍ଷୁର ତରଳ ଚଞ୍ଚଳ ଭଙ୍ଗୀ ।

୨୯ । ବ୍ରଜବଧୂ ଶିରୋମଣି—ଗୋପୀଶ୍ରେଷ୍ଠା ରାଧା । ବେଢ଼ାରେ
ରସିକ······ନାସୀ ଭାବ ଅଣି—ଯେଉଁମାନେ ପ୍ରକୃତ
ରସିକ ସେମାନେ ଗୁଣବତୀ ନାରୀର ଅଙ୍ଗପ୍ରାପ୍ତ ବାଣ
ତାର ପୂଜା କରନ୍ତି । ବଡ଼ କଣ—ଭୋଗ ପାଳ—ସ୍ତ୍ରୀ
ଓ ଫୁଲମାନଙ୍କୁ ଯେତେ ପାଳବ ତେତେ ସୁଖଭୋଗ
କେବଳ ବଢେ ।

୩୦ । ସୁମନା—ସ୍ତ୍ରୀ । ସୁମନ—ପୁଷ୍ପ । ସୁମନସ—ପଣ୍ଡିତ ।
ଏମାନେ ଯେତେ ଦୋଷ କଲେ ସୁଦ୍ଧା ବିବେକୀ
ସୁପୁରୁଷମାନେ ତାହା କ୍ଷମା କରନ୍ତି । ଅବଧାନ—
ଅନୁଗ୍ରହ ।

୩୧ । ସରସ ସନ୍ଦର୍ଭ ଗର୍ଭ ଭାବେ—ରସପୂର୍ଣ୍ଣ ହୃଦୟରେ ।
ସଙ୍ଗଭଙ୍ଗ—ବିଚ୍ଛେଦ; ତହିଁରୁ ବଳି ବଡ଼ ଘାତ ଆଉ
ନାହିଁ ।

୩୨ । ଶ୍ୟାମ ଶାମା—ରାଧା କୃଷ୍ଣ । ଥକଉ—ଥିର । ପଉଦର—ଘଡ଼କର ।

୩୩ । ହେଲୁ ଭୂ···ଅମ୍ବର ନବଡ ଶୃଙ୍ଗାରରସ ବୃଷ୍ଟିକି ପବନ ହୋଇ ନାଶ କଲୁ । କଳ—ପାଣ୍ଟି ଥୋଇଥିଲୁ । ହର ବଇରି ଶର—କନ୍ଦର୍ପ ଶର ।

୩୪ । ଯଇଲ—ଛଇଲ ବା ରସିକ । ନ ଯମେ—ମଙ୍ଗଳରେ । ଯଣିଦାକାଳ—ସନ୍ଧିକାଳ । ଯନ୍ଦ—ଛନ୍ଦ । ଆଭରଣବନ୍ଧ—ଅଳଙ୍କାର ଧାପନ ।

---

## ଅନୁରାଗ ରତ୍ନାକର ଚଉତିଶା

୧ । କାଳକ—ସର୍ବଦା ।

୨ । ଥୋକାଏ—କଛୁ । କନକ ଗୋଖ—ସୁନା ଗୋଖୀ ।

୩ । ଗଳାର ହାର କହନ୍ତ । କନ୍ତୁ ହାର ପଦଖା ଥିବାରୁ ମନରେ କଷ୍ଟ ହେଉଚ । ଭ୍ରବ ଭ୍ରବ ବା ଗଦ୍ଗଦଳକ କହନ୍ତ । ଖଲକେ—ଯଣକେ । ଖଲକେ ଅଛ ଖଲକେ ନାହିଁ—ସେଇଲାଗେ ଥାଏ, ସେଇଲାଗେ ଝଡ଼ପଡ଼େ ।

୪ । ଘେନାଘେନ—ସ୍ନେହ । ଘନସାର—କର୍ପୂର । ଘୁଣାଷରକେ ଘୁଣପୋକ କାଠରେ ଅକ୍ଷର କଲାପର ।

୫ । ଛନ୍ଦେ—କପଟରେ । ଜୀବନ—ଜଳ । ଛନ୍ଦ୍ରଦରଶୀ—( Critic ) ଯେଉଁମାନେ ଛଦ୍ର ଖୋଜନ୍ତ ।

୬ । ବାଗ—ଆଚରଣ, କଥା । ଡଙ୍ଗା—ନଙ୍ଗ । ତରଣୀ—ନୌକା ।

୮ । ହଂସୂଲତୂଳ—ହଂସଲୋମଶଯ୍ୟା । କୋମଳ (ବିଶେଷଣପଦ) ଏଠାରେ ବିଶେଷ୍ୟ ହୋଇଅଛି ।

୯ । ଝଷକେତକ—କନ୍ଦର୍ପ । ଝଲଗଉଝ—ଝଟକାଙ୍ଗୀ । ବଚନଚୟନା—ବୋଲମାନଙ୍କ ।

୧୦ । ଜୀବନଧନ————————ଦୁଃଖୀସଙ୍ଗାଳ କହିବାକୁ ମନ-ବଳୁନାହିଁ କାରଣ ଦୁଃଖୀ ତାଙ୍କୁ ବିଳମ୍ବ କରି ଶରୀର ପୋଷଣ କରେ, କାମଧ୍ୱଜ ବା ବଦନ୍ତ ଜନ୍ତୁ ତାହା ପ୍ରତିକୂଳ ପବନରେ ପଛକୁ ପଡ଼େ ବୋଲି ମନ ବଳୁ ନାହିଁ । କାହିଁକି ନା ଭୂ ସବୁବେଳେ ଅଗରେ ଥାଉ, ପଛରେ ରହିବା ଲୋକ ଭୂ ନୋହୁ ।

୧୧ । ଟଙ୍କଧର ବଇରି—କାମଦେବ । କାମଦେବଙ୍କ ଟୋପରୁ ତରିବାକୁ ଚୋଟେ ଜଣୁଣି ବୋଲି ଅବା କଦନ୍ତ, ଜନ୍ତୁ ଜଣୁଣି କାଠରେ ତିଆରି ହୋଇ ଥିବାରୁ ମନ ବଳୁ ନାହିଁ । ତୋ ଟେକ ଅର୍ଥାତ୍ ଗରିମାକୁ ବର୍ଣ୍ଣନା କଲେ ହିଁ ଏ ସୁଦ୍ଧା ସରିବ ନାହିଁ । ହେ ଗୁରୁ—ନିତମ୍ବିନି ! ମୁଁ କାହିଁକି, ମହେଶ ସୁଦ୍ଧା ତାହା ଶେଷ କରି ପାରିବେ ନାହିଁ । ଠଣମଧ୍ୟ—ଶୋଭନକଟି । ସୁନ୍ଦର ସୀମା—ସକଳ ଲାବଣ୍ୟର ଚୂଡ଼ାନ୍ତ ।

୧୩ । ମାନସ—ମାନସ ରାଜହଂସୀ- ମାନସ ରୂପକ ମାନସରୋ-ବରର ରାଜହଂସୀ ।

୧୪ । ଭାମ କହିବା—ଅଭିରଞ୍ଜନ କରିବା । ଛଦ୍ମ—କପଟ । ପ୍ରେମ ଅନୁରୋଧରେ କପଟ କଥା ଇହାରି ଭୂଲ୍ଲି କ୍ଷଣଭଙ୍ଗୁର ।

୧୫ । ଅରତ ବୋଲ — — —

ଅଧୈର୍ଯ୍ୟ ସମୟର କଥା ଓ ଅନଙ୍ଗ ପୀଡ଼ା ସମୟର ଗୃହ୍ଟ ଏ ଦୁହେଁ ବାରଣ ମାନନ୍ତି ନାହିଁ । ମୁଁ ଯଦି ନିଜକୁ ଭ୍ରମର ଓ ତୋତେ ଫୁଲ କହୁଛି ତେବେ ଉପମାରେ ସ୍ତୃହ ରହୁଛି । କାହିଁକି ନା ଭ୍ରମର ପଦ୍ମଠାରୁ ଯେ ବଣ ମଲ୍ଲୀ ଯାଏ ସମସ୍ତଙ୍କ ସଙ୍ଗରେ ପ୍ରୀତିକରେ ଓ ସେ ପ୍ରୀତି ଐକାନ୍ତିକ ବା ତର ନୁହେଁ ।

୧୬ । ଖମଣ୍ଡଳେ—ଅକାଶରେ । କଇରବ—କଇଂ ।

୧୮ । ମଦନଶର ଦୂର ଅଦୂର ଉଭୟ ଅବସ୍ଥାରେ ଶରୀରକୁ ସୁଖ ଓ ଦୁଃଖ ଦିଏ ।

୧୯ । ବୈଦ୍ୟ ବୋଧେ ତୋତେ କନ୍ଦର୍ପରୋଗକୁ ଔଷଧ ଲେଖା କରନ୍ତି କିନ୍ତୁ ତହିଁର ପ୍ରଭା ଚନ୍ଦ୍ର କରଣ ଦ୍ୱାରା ବଢ଼େ । ହୃଦୟର ବାଣୀ କହିଲେ ତାହା ମଧ୍ୟ ତୋ କଥା ମାଧୁରୀରୁ ଊଣା ବା ନ୍ୟୂନ ହେଉଛି ।

୨୦ । ତୋତେ ଚନ୍ଦ୍ର ଓ ମୋତେ ଚନ୍ଦ୍ରମଣି ଅବା କହନ୍ତି କିନ୍ତୁ ଚନ୍ଦ୍ର କେବଳ ରାତିରେ ଚନ୍ଦ୍ରମଣିକୁ ତରଳାଏ । ତୁ ପରା ମୋତେ ଦିନ ରାତି ତରଳାଉ !

୨୧ । ପୀବରସ୍ତନା—ବର୍ତ୍ତୁଳ ଉରଜା

୨୨ । ଫୁଲ ସମୟ—ବସନ୍ତ । ପୟୋଦକାଳ—ବର୍ଷା ।ୟୁ ୂ ରହିତ—ଅଶ୍ରଦ୍ଧା ଅବଲମ୍ବିତ—ଶୀଘ୍ର ।

୨୩ । ତୋତେ ବାଣୀବରଣୀ କହିଲେ ବିବେକହୀନତାର ପରିଚୟ ଦେବାକୁ ହେବ । କାରଣ ପ୍ରକୃତ ରାଗ ନ ହେଲେ ବାଣୀରୁ ସାର ଗାମା ପାଧା ନିସା ଜାତ ହୁଏ ନାହିଁ ।

ବର୍ଣ୍ଣ ଉଚ୍ଚାରଣ କରି ହୃଦୟରେ ପ୍ରେମସଞ୍ଚାର କରିବା ତାର ସାଧ୍ୟାତୀତ ।

୨୫ । ମନ୍ଦା ଆରମ୍ଭ—ମନ୍ଦାଠାଣ ।

୨୬ । ଜୀବନ ଥିବାଯାକ ସେମାନଙ୍କର ମନ ଧ୍ୟାନ ଆଡ଼କୁ ଯିବ ନାହିଁ ।

୨୭ । ଶିଲୀମୁଖ—ଭ୍ରମର । ପତଙ୍ଗ—ପକ୍ଷୀ । ପତଙ୍ଗ—ସୂର୍ଯ୍ୟ । ରଙ୍ଗଭଙ୍ଗ—ରଙ୍ଗବର୍ଣ୍ଣନାଶ । ପଦ୍ମରାଗ—ରକ୍ତବର୍ଣ୍ଣ ମଣିବିଶେଷ ।

୩୧ । ଲୋକପାଳକ—ବ୍ରହ୍ମା ।

୩୧ । ସହସ୍ରକର—ସୂର୍ଯ୍ୟ । ଅମରଗିରି—ମେରୁପର୍ବତ । ମୃଗରାଜ—ସିଂହ ।

୩୩ । ଦ୍ୱାରଦେଶରେ—ଦୁଆରଦାଣ୍ଡରେ । ଦଂଶ—ସର୍ପ । ସ୍ୱଚ୍ଛନ୍ଦ—ଛଚ୍ଛନ୍ଦ—ସ୍ୱଚ୍ଛନ୍ଦ । ଘୋର—ଗାଢ଼ ।

---

## ଦୃଷ୍ଟାନ୍ତ ଚଉତିଶା

୧ । କମଳନୟନ—କୃଷ୍ଣ । ଗୁଆଁର—ପାମର ଶାଦକ । ପାଷଣ୍ଡ ମୂର୍ଖକୁ କବିତା ବୁଝାଇବା ଯେପରି ଅସମ୍ଭବ ପ୍ରଭୁ କୋପ କଲେ ଉପାୟ ବିଧାନ କରିବା ସେପରି ଅସମ୍ଭବ ।

୨ । ପ୍ରତିପଦାରେ ପାଠ ପଢ଼ିଲେ ବିଦ୍ୟା ନାଶ ଯାଏ ।

୩ । ଗିରିନଦୀ ଅଳ୍ପକେ ବଢ଼ି ଛୁଟିଯାଏ । ସାଧାର ସ୍ନେହ ସେହିପରି ହେଲା ।

୪ । ଧନ ବନ୍ଧୁଙ୍କ ସ୍ନେହ ଅଛି ଅଳ୍ପକାଳସ୍ଥାୟୀ । ମେଘର ଛାଇ ମଧ୍ୟ ଅଛି ଅଳ୍ପକାଳ ସ୍ଥାୟୀ ।

୫ । ଇଛୁ—ଅଖୁ ।

୬ । ଗୃମୀକର—ସୁନା । ଚନ୍ଦ୍ରଅବତଂସ ନନ୍ଦନ ଜନମ ଘଷ୍ଠି ମୋତେ କଲା—ଗଣେଶ ଚତୁର୍ଥୀରେ ଚନ୍ଦ୍ରର ମୁହଁ ଗୃହାନ୍ତି ନାହିଁ । ସେହିଭଳି ମତେ ନ ଗୃହଁ ଗୃଲଗଲ ।

୭ । ବକା କୁସୁମ—ଗଇସ । ମତେ ଗଇସ ଫୁଲ ପରି କଲା ଅର୍ଥାତ୍ ଛେଷ୍ଟ ଗଇସ ଫୁଲ ଛୁଡ଼ି ଗଲେ କୁଆଡ଼କି ଯାଏ ନାହିଁ ।

୯ । ଚିନ୍ତାମଣି ନିକଟରେ ଥିଲେ ସୁଦ୍ଧା ଥିଲେ ଦରିଦ୍ର ଲୋକର ଦରିଦ୍ରତା ଦୂର ହୁଏ ନାହିଁ । ଚନ୍ଦ୍ରାମଣି—ଚନ୍ଦ୍ରାଗ୍ରସ୍ତ ।

୧୦ । ନଷ୍ଟେ ଜାଣିଲୁ···ଭାବବତୀର ଭାବ କୁସୁମ ଗନ୍ଧ ପରି ମଉଳ ଗଲା । ନାଶଇବ···ସୁଖର ଦିନ ବହୁଗୁଣିତ ହେଲେ ମଧ ପୂର୍ବ ଭୁକ୍ତ ସନ୍ତାପର ସ୍ମୃତି ଲିଭାଇ ପାରେ ନାହିଁ ।

୧୧ । ମନଦିଜ—କନ୍ଦର୍ପ । ହରମାଳିକା—ରୁଦ୍ରାକ୍ଷ ମାଳୀ । ଝଙ୍କଧର ରିପୁ—ମଦନ । ବଳଷ୍ଟ ସିଂହ ମୁଖରେ ମୃଗ ପଡ଼ିଲେ ସେ ଯେପରି ନିରୁପାୟ ହୁଏ ମୁଁ ସେହିପରି ହୋଇଅଛୁ ।

୧୨ । ରଙ୍ଗ—ସୁବର୍ଣ୍ଣ । ଠାକୁର ହୋଇ···ସୁନା ଯଦି ଠାକୁର ମୂର୍ତ୍ତି ହୋଇ ରହେ ତେବେ ସମସ୍ତେ ତାର ବହୁମୂଲ୍ୟତା ସ୍ୱୀକାର କରନ୍ତି, କିନ୍ତୁ ଦରିଦ୍ର ଲୋକ ହାତରେ ସେହି ସୁନା ରହିଲେ ତାହା ରଜତ ବା ରୁପା ବୋଲାଏ ।

୧୩ । ଡରୁଥାଇ ତାର—ପାନକ୍ଷଣୀ ତାର ପାନ ଶୁଖିଯିବବୋଲି ଯେପରି ଡରୁଥାଏ ତାହା ମୁହିଁ ଶୁଖି ଯିବାକୁ ମୁଁ ସେପରି ଡରୁଥାଏ ।

୧୪ । ଫେନ ଧର କର—ଫଣା ଟେକ ।

୧୫ । ଅବନାବଶୀର—ଲତିକା କାଠ ବାଡ଼ରେ ନ ମାଡ଼ି ପାରିବାରୁ ଖସି ପଡ଼େ ସେଥିଯୋଗୁ ତାର ସ୍ନେହ କାଠ-ବାଡ଼ରୁ ଊଣା ହୁଏ ।

୧୬ । ତପନୀୟ—ସ୍ୱର୍ଣ୍ଣ । ଅଙ୍ଗହାର—ଅଙ୍ଗର ଭୂଷଣ । ହାର—ଗଳାମାଳି ।

୧୭ । ଘନଲତା—ବଜୁଳି । ବନଜ—ପଦ୍ମ । ଥିରମଣ୍ଡନା—ଧର ମଣ୍ଡନା ।

୧୮ । ଦ୍ୱିରଦ ଗମନା—ଗଜଗମନା । ରାଧା ଦୟା କରିବ କି ନ କରିବ ଏକଥା ଜାଣି ନ ଥିବାରୁ ଅନର୍ଦ୍ଦିଷ୍ଟଭାଗ୍ୟ ଦ୍ୱାରସ୍ଥିତ ଭିକାରି ପରି ମୁଁ ସନ୍ଦେହରେ ପଡ଼ିଛି । ଦୂରୁ ଦେଖିଲେ—ଦୂରରୁ ଦେଖିଲେ ସେ ମନୁଷ୍ୟମାନଙ୍କୁ ଦେବତାମାନଙ୍କ ଗୃହିଁବା ଅର୍ଥାତ୍ ନିର୍ନିମେଷ ଦୃଷ୍ଟି ଦିଏ ।

୧୯ । ଧ୍ୱଂସି ଦେଲେ·····ଯେପରି ବ୍ୟାଧିଗ୍ରସ୍ତ ଲୋକର କାତର ବାଣୀ ବୈଦ୍ୟ କର୍ଣ୍ଣରୁ ବାହାରିବା ଅସମ୍ଭବ ସେହିପରି ମୋ ଦୁଃଖ ତା ହୃଦୟରେ ପ୍ରତିବମ୍ବିତ ହେବା ଅସମ୍ଭବ ।

୨୦ । ଅନ୍ତପଟ ଅନ୍ତ—ଲୁଗାବାଡ଼ ପଟ୍ଟ ଅଡ଼େ ଥିବା । ଉତ୍କାହା—ଉତ୍କଣ୍ଠିତ ।

୨୧ । ପଶୁପତି—ଶତ୍ରୁ—ସନ୍ତାପ—ଅନଳେ—କାମାନଳେ । ପଙ୍କଜ-କର—ସୂର୍ଯ୍ୟ ।

୨୨ । ଫଳ ଥାଉ······ଫଳ ଥାଉ ଫୁଲ ବିଶିଖ ପତି ଯେ କନ୍ଦର୍ପ ସେ ଫୁଲକୁ ଭୋଗ କଲା । ଶିଳୀମୁଖ—ଭ୍ରମର ।

୨୩ । ବାଳିଶ—ମୂର୍ଖ । ବାତ—ପବନ ।

୨୪ । ଭବରିପୁ—କନ୍ଦର୍ପ ।

୨୫ । ମଦର—ମତ୍ତ ଖଞ୍ଜନ । ଯେନାଯେନ ଭବ—ସ୍ନେହଭାବ ନଳିନକେତନ ମାନସ···ବ୍ରହ୍ମାଙ୍କ ମନ ଯେପରି ସମସ୍ତଙ୍କ ପ୍ରତି ପୃଥକ୍ ପୃଥକ୍ ସେହିପରି କନ୍ଦର୍ପ ଆମ୍ଭ ଦୁହିଁଙ୍କୁ କରିଛି ।

୨୬ । ଜାତୁ ମୁଁ···ମୋତେ ଗୁରୁ ନେ ନୃପତି ବାମ ହେଲେ । ବାମଦେବ ଯେ ମହାଦେବ ହୋଇଅଛନ୍ତି । ଲଘୁ—ନୀଚ ଲୋକ । ଲଘୁ କରାଇଲା—ଛୋଟ କରାଇଲା । ଶାଳକା ଫୁଲ—ଶାଆଳଫୁଲ, କଲମାଦି ଧ ନ୍ୟପୁଷ୍ପ । ଏହା ଅତି କୋମଳ । ଜାଣିଥିଲି ତାର···ମୁଁ ଜାଣିଥିଲି ରାଧାର ହୃଦୟ ଶାଳକା ଫୁଲ ପରି କୋମଳ କିନ୍ତୁ ବର୍ତ୍ତ-ମାନ ତାହା ଷଣ୍ଢକ ପଥର ସା ଙ୍ଗ ତୁଳନୀୟ ହେଲା ଅର୍ଥାତ୍ ରାଧାର ହୃଦୟ ମୋ ପ୍ରତି ପାଷାଣ କଠିନ ହେଲା ।

୨୭ । ରଙ୍ଗେ—ବିଳାସରେ । ରାଗ—କ୍ରୋଧ । ରଥାଙ୍ଗ ରଜନୀ ଦଶା—ଚକ୍ରବାକମାନଙ୍କର ରଜନୀରେ ବିଚ୍ଛେଦ ହୁଏ । ମୋତେ ଏବେ ସେହି ଦଶା ପଡିଲା ।

୨୯ । ଲୋକନାଥ—ବିଧାତା । ଲେଶେ ତାର ମୋର········ ରାଧାର ମୋର ପଲକ ମାତ୍ରକ ପାଇଁ ସୁଦ୍ଧା ଅନ୍ତର

ନ ଥିଲା । ବର୍ତ୍ତମାନ ସେ ସୁଖ ଆକାଶ କୁସୁମ ପରି ହୋଇଅଛି । ଅର୍ଥାତ୍ ଆକାଶରେ ଫୁଲ ଫୁଟିବା ଯେପରି ସମ୍ପୂର୍ଣ୍ଣ ଅସମ୍ଭବ ତଥା ସହିତ ମୋର ମିଳନ ଯେପରି ଅସମ୍ଭବ । ଲୋଚନ-ଶ୍ରବଣ-ମଣ୍ଡନ—ସର୍ପ ମଣ୍ଡିତ ମହାଦେବ । ଲମ୍ବ ଉଦର—ଗଣେଶ ।

୩୦ । ଇନ୍ଦ୍ର ପଦବୀ—ଇନ୍ଦ୍ର ସମ୍ପତ୍ତି ।

୩୧ । ଶଶୀମୁଖୀ—ଚନ୍ଦ୍ରମୁଖୀ । ପୟ—କ୍ଷୀର । ସରୂପ ସର୍ପକୁ—କରତ ପ୍ରାପ୍ତେ ଦେହବନ୍ତ ସାପକୁ କ୍ଷୀର ଦେଲେ ସେ ପ୍ରତ୍ୟୁଷରେ ଗରଳ ବାନ୍ତି କରେ । ସେହିପରି କନ୍ଦର୍ପକୁ ପୟ ଦେଇଅଛି । ଶଙ୍କର କରତ ସର ହୋଇ କ ସମାନ ହୋଇ ଦୁଇଅଛ କାହିଁ । ସେହିପରି ଏଣୁ କନ୍ଦର୍ପ କାନ୍ଦୁଛି, ତେଣୁ ତଥା କାନ୍ଦୁଛି । ମୁଁ ମଧ୍ୟରେ ରହି ବିରହ ବ୍ୟାକୁଳତା ଅନୁଭବ କରୁଅଛି ।

୩୨ । ଅଦାଲୂତା—ନିର୍ଦ୍ଦୟତା । ଶମ୍ଭୁ—ଶିବ ।

୩୩ । ପୁଷ୍ପ ସମାନ ହୋଇବ—ପ୍ରସ୍ଫୁଟିତ ହୋଇବ । ପ୍ରକାଶିବ ଆନ—ଅନ୍ୟ କଥା କହିବ । ସନ୍ଦେଶ—ଖବର ।

୩୪ । ହରିଣନୟନୀ—ମୃଗନେତ୍ରୀ । ପଞ୍ଚଶରପତ୍ନୀ-ନିଜାଅ । ଘନରସ—ମିଠାପାଣି, ଶୃଙ୍ଗାର ରସ । ସହର୍ଷ—ଆନନ୍ଦ ।

୩୫ । ସମେ—ମଙ୍ଗଳରେ । ସୌଭ—ଶୃଙ୍ଖଳ୍ୟ । ଗୋଟି ଅଭୂତ ଦଶାକୁ ବହି ନାନାମତେ ଶରୀର ଧରି, ପିଞ୍ଜରରେ ଥିବା ପକ୍ଷୀ ଦଶାକୁ ବହି ।

---

# ରାଧିକା ସ୍ମରଣ ଚଉତିଶା

୧ । କମଳ ନୟନ—କୃଷ୍ଣ । କଂସ କଟକ—କଂସ ନଗର । କଳକଣ୍ଠକଣ୍ଠୀ—ପିକଭାଷିଣୀ । ନକ୍ଷତ୍ର କଣ୍ଠୀ—ଅମୂଲ୍ୟ ରତ୍ନମାଳା ।

୨ । ଖଳ—ଦୁଷ୍ଟ ।

୭ । ଚନ୍ଦ୍ର କିରଣରେ ଚନ୍ଦ୍ର କାନ୍ତମଣି ଆର୍ଦ୍ର ହୋଇଥାଏ । ଚଣ୍ଡକର ଅର୍ଥାତ୍ ସୂର୍ଯ୍ୟଙ୍କ କିରଣରେ ଚନ୍ଦ୍ରମଣି ବା ସୂର୍ଯ୍ୟ କାନ୍ତମଣି ଶୁଖିଯାଏ ।

୮ । ଗଗନା—ଗଗନ । ଜାମ୍ବୁନଦ ଗୋଷ୍ଠ—ସୁନା ଗୋଷ୍ଠ ।

୯ । କୁରରୀ—କ୍ରନ୍ଦନପର ପକ୍ଷୀବିଶେଷ । ଝାମ ଯାଉଥିବ—ଝାଇଁ ମାରୁଥିବ । ଝସକେତୁ ଶରେ—କନ୍ଦର୍ପ ଶରରେ । ଝଲକ ବଦନୀ—ସମୁଜ୍ଜ୍ୱଳ ମୁଖୀ, ସୁନ୍ଦର ମୁଖୀ । ଝୁଲି ଯାଉଥିବ—ଓଦା ହୋଇ ଯାଉଥିବ ।

୧୦ । ଦୂଷଣ—ନିନ୍ଦା । ନେହନୀରେ···ଚକ୍ଷୁର ଲୋତକରେ ଭାସିଯିବା ଭୟରେ ତାକୁ ନିଦ୍ରା ଆସିବ ନାହିଁ ।

୧୧ । ଅନଙ୍ଗ—କନ୍ଦର୍ପ । ଟଳଟଳ—ଥରଥର । ଟେକଲାବଣ୍ୟ—ବିଶେଷ ସୌନ୍ଦର୍ଯ୍ୟ । କୁଚ କଳଶେ—ସ୍ତନ କୁମ୍ଭରେ । ଅଙ୍କରେ—କୋଳରେ । ଟଙ୍କଧର—ମହାଦେବ । ଟେକସ୍ୱର ହୋଇ—ବଡ଼ ପାଟି କରି ।

୧୨ । ଅପାରୁଅପାର—ଅସୀମରୁ ଅସୀମ । ଠାଠିକ କର—ଅଛି ଠିକଣା କର ।

୧୪ । ଗଣ୍ଡପାଳୀ—ଗଣ୍ଡସ୍ଥଳ । ପ୍ରସଙ୍ଗ—ବିଷୟ । ସୁରଙ୍ଗ-କୁରଙ୍ଗ-ନୟନ-ତରଙ୍ଗ—ମୃଗ ନୟନାର ସୁନ୍ଦର ଚଞ୍ଚଳ ଚାହାଣୀ । ଉପ୍ରୋଧ—ଅନୁରୋଧ ।

୧୫ । ମଧୁର ରଜନୀ—ବସନ୍ତ ସମ୍ପୃକ୍ତ ରାତ୍ର ।

୧୬ । ତାପତନ୍ତନୀ ତନ୍ତ······ବରଷା ପ୍ରଖର—ମୋର ହୃଦୟ ସନ୍ତାପ ରୂପକ ନଦୀକୂଳସ୍ଥିତ ବୃକ୍ଷ ପରି ହୋଇଅଛୁ । ତା ଉପରେ କାମଦେବ ପ୍ରବଳ ଶର ବୃଷ୍ଟି କରୁଅଛୁ ଅର୍ଥାତ୍ ମୋହର ହୃଦୟ କନ୍ଦର୍ପ ବେଦନା ଦ୍ୱାରା ବ୍ୟଥିତ ।

୧୭ । ପ୍ରସନ୍ନ (ବିଶେଷଣ ପଦ) ବିଶେଷ୍ୟ ରୂପେ ବ୍ୟବହୃତ ।

୧୮ । ବନ୍ଧୂକ ଅଧର—ବନ୍ଧୂଲୀ ଫୁଲ ପରି ରକ୍ତବର୍ଣ୍ଣ ଓଷ୍ଠ । ଦଉହାସ—ମନ୍ଦହାସ । ଦଇବେ—ଦୈବବଶତଃ । ନିଶ୍ୱାସ—ବିରହ ଜନିତ ନିଶ୍ୱାସ । ସୁରଙ୍ଗ ବେଭାର—ଓଷ୍ଠ ରକ୍ତିମା । ଝଳ—ଶୋଭା । ମୁକୁତାମାଳ—ମୁକ୍ତାହାର ।

୧୯ । ପ୍ରମାଦ ପ୍ରୀତିକି—ବିପଦ ଜାତ କରୁଥିବା ପ୍ରୀତି । ଧ୍ରୁବ—ନିଶ୍ଚିତ । ଧ୍ରୁବଲୋକେ—ଧ୍ରୁବ ମଣ୍ଡଳରେ । ହଠ—ହଇରାଣ, କପଟ ।

୨୧ । ବରଷାପାଷାଣ କଲାପ—ବର୍ଷାରେ ପଡୁଥିବା ପଥର ସମୂହ । ପୀତ ବସନୀ—ହଳଦିଆ ପାଟ ପିନ୍ଧିଥିବା । ପୁଷ୍ପ କାଳ—ବସନ୍ତ ଋତୁ । ପଲ୍ଲବ—ଦଶନ—ବସନୀ—କୋମଳ ପତ୍ରାଧରା, କଣ୍ଟଲପ୍ରାଧରା ।

୨୨ । ଫୁରୁଣାରେ—ଅନନ୍ଦରେ ଫୁଲ୍ଲ-ବିକଶିତ ।

୨୩ । ବିରଞ୍ଚି—ବ୍ରହ୍ମା ।

୨୪ । ଭୂପତି—ରାଜା । ଭାବଗ୍ରାହୀ—ଭଗବାନ୍ । ଭାବେ—ସ୍ନେହରେ । କମଳା—ଲକ୍ଷ୍ମୀ ।

୨୬ । ଘନ କାଳରେ—ବର୍ଷା କାଳରେ । ମରାଳ ଗମନୀ—ହଂସ ଗମନା । ଅତଙ୍କ—ଦୁଃଖ ।

୨୭ । ଉତ୍ପଳ—ପଦ୍ମ ।

୨୮ । ଲଳିତ ଲପନୀ—ସୁନ୍ଦର ବଦନା । କ୍ଷମା-ଜଳନିଧି—କ୍ଷମାସାଗର । ସୁମନା—ଉତ୍ତମ ମନା ।

୨୯ । ମଦନ କଦନ—ମଦନ କଷଣ ।

୩୦ । ବସୁମତୀ (ସର୍ବଂସହା)—ପୃଥିବୀ । ଶୀର୍ଣ୍ଣି—କ୍ଷୀଣ । ଶିବ ଶିବ ଶିବ—ବାରମ୍ବାର ସମ୍ବୋଧନ ହେତୁରୁ ଲଖିତ ।

୩୧ । ଶକଳ—ଚନ୍ଦ୍ରମା ଅର୍ଥାତ୍ ଚନ୍ଦ୍ରମା—ଶକଳ ଶଶୀ ଖଣ୍ଡ । ସକଳ ଚନ୍ଦ୍ରମୁଖୀ—ପୂର୍ଣ୍ଣଚନ୍ଦ୍ରମୁଖୀ । ଦଶା—ଅଭଳାଷ, ଚନ୍ତା, ସ୍ମୃତ ପ୍ରଭୃତ କାମଜ ଦଶା । ନବମ ଦଶା—ମୂର୍ଚ୍ଛା । ମନୋଭବ—କନ୍ଦର୍ପ । ଶଙ୍ଖ ଚକ୍ରପାଣି—ଶଙ୍ଖ ଚକ୍ର ହସ୍ତ ଭଗବାନ୍ ।

୩୨ । ସଜଳ ନୟନା—ସଲୋତକ ନୟନା । ସୁମନ—ଉତ୍ତମ ମନ ଯାହାର । ସୁମନସ ଶର—ଫୁଲ ଶର କନ୍ଦର୍ପ ।

୩୩ । ସାରସ—ପଦ୍ମ ।

୩୪ । କ୍ଷପାକର ମୁଖୀ—ଚନ୍ଦ୍ରମୁଖୀ । କ୍ଷୋଭ—ଦୁଃଖ । କ୍ଷେମେ—ମଙ୍ଗଳରେ । ଉଦ୍ଧବ ଚଉତିଶା ।

୧ । କୁସୁମ ଶରେ—କନ୍ଦର୍ପ ବାଣରେ । ତାପୀ—ଦୁଃଖୀ, ସନ୍ତପ୍ତ । ଶଫଲ ନନ୍ଦନ—ଅକ୍ରୂର । ଶଫଲକୁ ନେଲା ଆମ୍ଭଙ୍କୁ—ଅର୍ଥାତ୍ କୃଷ୍ଣଙ୍କୁ ଗୋପ ପୁରରୁ କଂସ ନଗର ମଥୁରାକୁ ନେଇ ଆମ୍ଭ ଜୀବନ ବ୍ୟର୍ଥ କଲା ।

୨ । ସ୍ନିଗ୍ଧ—ଲକ୍ଷଣୀ । ଦାରୁହସ୍ତ ପର୍ଯ୍ୟନ୍ତେ ପରବଶେ ଭ୍ରମି
ମରଇ—ଯେପରି ବାଣକାର ପର ସଙ୍କାଶେ ଶ୍ରମ କରି
ବୁଲେ । ଖାଇବା ପିଇବା……ପର୍ଯ୍ୟନ୍ତ ନାଶନ୍ତ—
ସାପର ଦଂଶନ ଦ୍ୱାରା ପେଟ ପୂରୁ ନ ଥିଲେ ସୁଦ୍ଧା ସେ
ଦଂଶନ କରେ । ସେହିପରି ଅକ୍ରୂରର କିଛି ସ୍ୱାର୍ଥ ନ ଥାଇ
ସେ କୃଷ୍ଣଙ୍କୁ ନେଇଗଲା ।
୩ । ମର୍କଟ କଣ୍ଠମାଳୀ—ବେକର କଳା ରଙ୍ଗ କଣ୍ଠିମାଳୀ ।
ଗଣ୍ଠିଆ—କୃପଣ । ଗୁଆଁର—ମୂର୍ଖ, ନିର୍ବୋଧ । ଗାଈ
ବାରଣ ବାଡ଼—ଗାଈମାନଙ୍କୁ ବାରଣ କରିବା ନିମନ୍ତେ
ବନ୍ଧା ହୋଇଥିବା ବାଡ଼ ।
୪ । ଗୋପପୁର ଅବତଂସ—ଗୋପପୁରର ଶିରୋଭୂଷଣ ସ୍ୱରୂପ
ଶ୍ରୀକୃଷ୍ଣ । ହଂସ—ସୂର୍ଯ୍ୟ ।
୫ । କାହାଭାବେ—କେଉଁ ସ୍ଥୀର ପ୍ରୀତିରେ । ନୀତିବନ୍ତ—
ନୀତି ନିପୁଣ ।
୬ । ଚନ୍ଦ୍ରଚୂଡ଼—ମହାଦେବ । ଚତୁର ପଣ ମହିମାକୁ—
ଚନ୍ଦ୍ରଚୂଡ଼ ଅନୁଭବ କରିଥିଲେ ପଦ୍ମଯୋନି ବ୍ରହ୍ମାଙ୍କୁ—
ଶିବ ବାଣାସୁରର ପକ୍ଷପାତୀ ହୋଇ କୃଷ୍ଣଙ୍କ ସଙ୍ଗେ ଯୁଦ୍ଧ
କରି ପରାସ୍ତ ହେଲେ ଏଣୁ ସେ କୃଷ୍ଣଙ୍କ ଚତୁରପଣ
ମହିମାକୁ ଜାଣିଥିଲେ । କୃଷ୍ଣଙ୍କ ଚତୁର ପଣିଆ ବ୍ରହ୍ମା
ବତ୍ସା ହରଣରେ ଜାଣିଥିଲେ ।
୭ । ଅଭୀରୀ—ଗଉଡୁଣୀ । ବନଚରୀ—ବନବୁଲା । ଘୋଷବାସୀ—
ବନବାସୀ ।
୧୧ । ନେକ ତୃଷାର୍ତ୍ତ—ବଡ଼ ତୃଷାର୍ତ୍ତ । ଗ୍ରହପାଇଁ—ଅଗ୍ରହପାଇଁ ।

୧୪ । ଛାଳେ—ଥରେ ।

୧୫ । ଅଦୃଷ୍ଟ—ଭାଗ୍ୟ ।

୧୭ । ସ୍ୱାତିଜଳ—ସ୍ୱାତୀ ନକ୍ଷତ୍ରରେ ବର୍ଷିତ ବର୍ଷା ହୁଏ । ଅ'ଏ—
ଶିବ । ସେନ୍ନା—କବଚ ।

୨୨ । ଫୁଲ୍ଲାରବିନ୍ଦ ବଦନ—ପ୍ରଫୁଲ୍ଲିତ ପଦ୍ମମୁଖ କୃଷ୍ଣଚନ୍ଦ୍ର ।

୨୫ । ପୋତ—ଜାହାଜ ।

## ଗୋପୀ ସନ୍ଦେଶ ଚଉତିଶା

୧ । କୈତବ କୃପାହିନ୍ଧୁ ନାମ—କପଟ କୃପାସିନ୍ଧୁ ନାମ । ଖମଣ୍ଡଳୁ—ଆକାଶରୁ । ଖଚର—ଗଗନଚାରିଣୀ ।

୪ । ଘୃଣାକ୍ଷରେ—ଘୃଣା ପୋକ କରିଥିବା ଅକ୍ଷର ପରି ।

୫ । କଟାକ୍ଷ ରୁଦ୍ରାଣୀ ।

୭ । ଚତୁର୍ବର୍ଗ—ଧର୍ମ, ଅର୍ଥ, କାମ ଓ ମୋକ୍ଷ ।

୧୧ । କଇରବ—କଇଁ ।

୧୮ । ଦଶ ଚଉଦ ଲୋକ—ଚଉଦ ଭୁବନ ।

୧୯ । ଧରାଧର—ପର୍ବତ (ବିନ୍ଧ୍ୟ) ।

୨୫ । ମହେଶ—ମହାଦେବ । ବସୁନ୍ଧରା—ଧରଣୀ ।

୨୯ । କ୍ଷୀର—ଖୀର ।

୩୩ । ହଟକର—ଭଣ୍ଡିବା ଲୋକର ହଟହାଟକ—କପଟସୁବର୍ଣ୍ଣ

## ବଉଳ ଚଉତିଶା—

୨ । ଡୋରା କର—ସୁନ୍ଦର କର, ସୁଠକ କର । ଖରେ—ଚଞ୍ଚଳ ।

୩ । ଗଣ୍ଡୂଷ—ଦମ୍ଭାଇ ଦବ ।

୪ । ପଟୁଆଳ—ପଢ଼ଣ ପଶୁଆଏ ।

୫ । ଭୃଙ୍ଗଳ—ଭ୍ରମର ।

୧୧ । ଯୋଗ—ଖାତ ।

୧୩ । ଝଙ୍କା—ଅଶ୍ୱାଗ୍ରେର । ଉତ୍ତଁର—ଖଳ ।

୧୬ । ଦେଥଷ—କ୍ରୂରକର୍ମୀ, ଦାରୁଣ ।

୨୨ । ଘୃଣା—ଅନନ୍ଦ ।

---

## ବାନ୍ଧବୀ ଚଉତିଶା

୫ । ବାହୁବଲ୍ଲୀ—ବାହୁଲତା ।

୬ । ମନ୍ଥ—ମୁଗ ।

୯ । ଥଦା—କଟନ୍ତା—ସହାନୁଭୂତ ଦେଖାଉବା ଲୋକ ।

୧୨ । ଖାଇଁକି—ଝିଙ୍କି ।

୧୪ । ସବ୍ୟସାଚୀ ସାଧନା—ବାମହାତରେ ଅର୍ଜୁନଙ୍କ ପର ଶରମାରିବାରୂପ ସାଧନା—

୧୫ । ସେ ଦେହରେ ଶରଙ୍କ ପ୍ରେରିତ ଅନଳର ଜାଳା ଅନୁଭବ କରିଥିଲା ।

୧୮ । ଦ୍ୱିଜରାଜମୁଖୀ—ଚନ୍ଦ୍ରବଦନୀ ।

୨୮ । ବେପଥୁ—କମ୍ପ, ସ୍ତମ୍ଭ—ମୋହାବସ୍ଥା, ବୈସ୍ୱର—ସ୍ୱରଭଙ୍ଗ, ସ୍ୱେଦପ୍ରଳୟ—ଝାଳର ସମୁଦ୍ର ।

୩୪ । କ୍ଷପାକର ବଦନୀ—ଚନ୍ଦ୍ରମୁଖୀ ।

---

## ନବଘନ ଚଉତିଶା

୨ । ଷଣକାନ୍ତ—ବିଜୁଳି ।

୩ । ତୁମ୍ଭେ ହସ୍ତୀ ପରି ହୋଇଅଛ । ତୁମ୍ଭର ଗର୍ଜ୍ଜନ ହସ୍ତୀର ବୃଂହିତ (ଗର୍ଜନ) ପରି । ତୁମ୍ଭର ଜଳଧାର ଦାନ ଅର୍ଥାତ୍ ହସ୍ତୀର ମଦ ବାରିଧାରା ପରି ଅଉ ଯେଉଁ ବକମାନେ ଧାଡି ଧାଡ଼ି ହୋଇ ଆକାଶରେ ଉଡୁଅଛନ୍ତି ସେମାନେ ତୁମ୍ଭଠାରେ ହସ୍ତୀର ଦନ୍ତବତ୍ ଦେଖାଯାଉଅଛନ୍ତି ।

୪ । ଘନବଲ୍ଲୀ—ବିଜୁଳି ।

୫ । ନାଗ—ମେଘ । ନାଗ—ଶାପ । ବିଷ—ଗରଳ, ବିଷ—ଜଳ ନର୍ତ୍ତିତେ—ନର୍ତ୍ତିତ । ଜାଙ୍ଗଳିକ—କେଳା ।

୬ । ପୁଷ୍ପବନ୍ତ—ଚନ୍ଦ୍ର ।

୮ । ଏ ପଦରେ ଓ ୯ ପଦରେ ଶ୍ରୀକୃଷ୍ଣ ତାଙ୍କୁ ଓ ରାଧାଙ୍କୁ ବର୍ଷାକାଳ ସହିତ ଉପମିତ କରୁଅଛନ୍ତି ।

୯ । ଦାତ୍ୟୂହ—ଡାହୁକ ।

୧୦ । ବିରହ ସମୟରେ ଚନ୍ଦ୍ର ଚନ୍ଦନ ପ୍ରଭୃତି ଅତୀବ ସୁଖ ଦାୟକ ପଦାର୍ଥ ଦୁଃଖ ଦାୟକ ହୁଅନ୍ତି ।

୧୧ । ଚେକ—ଅର୍ଣ୍ଣବ ।

୧୨ । କେକୀ କଳାପ—ମୟୂର ଚନ୍ଦ୍ର । ଠାବ—ଜଣା ।

୧୪ । ଢାଳନେତ୍ର—କଟାକ୍ଷବର୍ତ୍ତୀ ।

୧୫ । ପୟୋଧର—ମେଘ, ଚକୁରମାଳା—ପ୍ରଲମ୍ବ କେଶ । ସୀର—ଲଙ୍ଗଳ । ୧୫ ଓ ୧୬ ପଦରେ ରାଧା ବର୍ଷାକାଳ ସହିତ ଉପମିତ ହୋଇଅଛନ୍ତି ।

୧୬ । ବିରହ ବ୍ୟାଧି ଶିବବଇରି—ବିରହରୂପ ମୟୂର ।

୨୬ । ଜୀବନମୁଞ୍ଚ—ଜଳଦ, ଯେ ଜୀବନକୁ ଛଡ଼ନ୍ତି ଅର୍ଥାତ୍ ପୃଥିବୀ ଉପରେ ଢାଳନ୍ତି । ବାଟୋ—ବାପଣ ।

୨୭ । ରାଜୀବପତ୍ର—ପଦ୍ମପୋଳ—ବଧାଣ୍ଡା ! ରୋଲମ୍ବ—ଭ୍ରମର ।

୨୯ । ଶିତିକଣ୍ଠ—ମୟୂର ।

୩୩ । ମୋ ମନ ମୋହର ନୁହଇ—ମୋ ମନ ମୋ ଆୟତ୍ତରେ ନାହିଁ ।

୩୪ । ଛମା ସାଗର—ଶ୍ରୀକୃଷ୍ଣ, ଲୋକମାତା ଚରଣେ—ଶ୍ରୀରାଧା ଚରଣେ, ଲୋକ—ପାଦତଳେ ସେବକ ।

